# ଦୁଇପଦ

ବର୍ତ୍ତମାନ ଯୁଗରେ ବିଜ୍ଞାନର ପ୍ରଗତି ସଙ୍ଗେ ସଙ୍ଗେ ଯନ୍ତ୍ର-ସଭ୍ୟତାର ଅଗ୍ରଗତି ସାଧିତ ହେଉଅଛି । ଦେଶର ବିଭିନ୍ନ ପ୍ରାକୃତିକ ସଂପଦକୁ ବିଜ୍ଞାନ ସାହାଯ୍ୟରେ ମାନବର ମଙ୍ଗଳ ନିମନ୍ତେ ବିନିଯୋଗ କରିବାର ବ୍ୟାପକ ବ୍ୟବସ୍ଥା ହୋଇଅଛି । ଶିଳ୍ପର ବିକାଶଲାଗି ଯେ କୌଣସି ଦେଶର ଖଣିଜ ସଂପଦ କମ୍ ଆବଶ୍ୟକ ଓ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେ । ଭାରତରେ ତଥା ଓଡ଼ିଶାରେ କିପରି ଖଣିଜ ସଂପଦ ପୂରିରହିଛି, ସେ ସଂପର୍କରେ ନାନା ତଥ୍ୟ ଏହି ପୁସ୍ତିକାରେ ସମାବେଶିତ କରିଛନ୍ତି ଅଧ୍ୟାପକ ଶ୍ରୀଯୁକ୍ତ ମନମୋହନ ମହାନ୍ତି । ଓଡ଼ିଶାର ପାଠକମାନଙ୍କୁ ଶିଳ୍ପ ସଚେତନ କରାଇବା ଦିଗରେ ଓ ବିବିଧ ଶିଳ୍ପର ଉନ୍ନତି-ଲାଗି ଖଣିଜ ସଂପଦର ଏକ ସ୍ପଷ୍ଟ ଧାରଣା ଦେବା ଦିଗରେ, ଏ ପୁସ୍ତକ ବିଶେଷ ସହାୟକ ହେବାର ଆଶା କରାଯାଏ ।

ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ
ଓଡ଼ିଶା ସାହିତ୍ୟ ଏକାଡ଼େମୀ

ଭୁବନେଶ୍ୱର
ତା ୧।୧୨।୭୪

## କୃତଜ୍ଞତା

ଏଥିରେ ସନ୍ନିବେଶିତ କେତେକ ଚିତ୍ରର ଫଟୋ ଓଡ଼ିଶା ସରକାରଙ୍କ ଡାଇରେକ୍ଟରଙ୍କଠାରୁ ପ୍ରାପ୍ତ । ସେଥିଲାଗି ମୁଁ କୃତଜ୍ଞ ।

**ଲେଖକ**

# ଆମ ଖଣିଜ ସଂପଦ

୧

କରଗୋଳା ଗାଁ—ସାମନାରେ କେତୋଟି ପାହାଡ଼ ମୁଣ୍ଡ ଟେକି ଠିଆ ହୋଇଛି । ପାହାଡ଼ ଓ ଗାଁ ମଝି ଦେଇ ରାସ୍ତାଟିଏ ଚାଲିଯାଇଛି । ସାମନାରେ ଥିବା ମଙ୍ଗଳାଭଞ୍ଜା ଓ ସର୍ପିଣୀ ପାହାଡ଼ର ନାସିପାଖକୁ ଆସିଲେ ବହୁ ଦୂରରେ ଦିଶେ ଟମକା-ଦଇତାରି ପାହାଡ଼ର ଚୂଳ; ଠିକ୍ ଦିଗ୍‌ବଳୟର ଧାରରେ—ଯେପରି ଜଣାପଡ଼େ ଖୁବ୍ ଗର୍ବ ତାର !



( ଦଇତାରି ପାହାଡ଼ର୍ ଶିଖର )

କାରଣ ଏଇ ତ ଆଣିଦେବ ଓଡ଼ିଶାର ସମୃଦ୍ଧି ! ଆଜ ରାଜମନ୍ତ୍ରୀମାନଙ୍କ ମୁହଁରେ ଟମକା-ଦଇତାରି, ବିଶେଷଜ୍ଞ-ବୈଜ୍ଞାନିକର ମୁହଁରେ ଟମକା-ଦଇତାରି ଏବଂ ଗାଁ-ଗଣ୍ଡାର ଲୋକ ବିଶେଷ କରି ପାହାଡ଼ତଳର ସେଇ ଶାଳଜଙ୍ଗଲଘେରା କନ୍ଧ, କୋହ୍ଲ, ମାଝି ଓ ଜୁଆଙ୍ଗ ବସ୍ତିରୁ ଭାସିଆସେ ସେଇ ଟମକା-ଦଇତାରି ପାହାଡ଼ର ନାଁ । ସେଇ ସରଳ

ଆଦିବାସୀ ମଧ୍ୟ ଆଜି ବୁଝିଛି ଯେ, ଟମକା-ଦଇତାରିରେ ଖଣି ଫିଟିବ; କଞ୍ଚା ଲୁହାପଥର ବୋଝେଇ ହୋଇ କୁଆଡ଼େ ବନ୍ଦରବାଟେ ବିଦେଶକୁ ପଠାହେବ । ସେଥିପାଇଁ ପାରାଦୀପଠାରେ ବନ୍ଦର ତିଆରି ହେଉଛି ଏବଂ ଖଣି ଅଞ୍ଚଳରୁ ବନ୍ଦରପର୍ଯ୍ୟନ୍ତ ଏକ୍ସପ୍ରେସ୍ ରାସ୍ତା ତିଆରି ହେଉଛି । ଓଡ଼ିଶାରେ ନୂଆ ଯୁଗ ଆସିଯିବ । ସରଳ ଆଦିବାସୀ ତା'ର ଏକ ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ଦେଖେ—ତା'ର ବି ଭାଗ୍ୟ ବଦଳିଯିବ; ଖାଦାନ୍



( ଟମକା ପାହାଡ଼ ଅଞ୍ଚଳର ଦୃଶ୍ୟ )

ହୋଇ କାମଦାମ ହେଲେ ବେଶ୍ ଭଲ ଦୁଇ ପଇସା ସେ ରୋଜଗାର କରିବ । ଅଭାବ ତା'ର ରହିବ ନାହିଁ । ଏଇ ଶୁଭଦିନକୁ ସେ ଉତ୍କଣ୍ଠିତ-ଭାବରେ ଅପେକ୍ଷା କରେ—ସେଦିନକୁ ସେ ପ୍ରାଣୋଚ୍ଛ୍ୱାସ ଦେଇ ସ୍ୱାଗତ କରିବ ।

ଦିନ ଥିଲା, ଯେତେବେଳେ ବି ଖଣ୍ଡେ ମଟରଗାଡ଼ି ବି ଦେଖିବା ତା ପକ୍ଷରେ ଦୁରୂହ ଥିଲା । ସେ ଭଲି, କି ପ୍ରକୃତିର ମନୋରମ ପରିବେଶ ଭଲ; ବାହାରର ଚକ୍‌ଚକିଆ ସହରର ରୂପକଥା ସେ ଭାବି ପାରି ନ

ଥିଲା । ଧୋବଧାଉଳିଆ ଲୋକଟିଏ ଦେଖିଲେ ଭୟ ପାଉଥିଲା । ହାଣ୍ଡିଆ
ପିଇ, ଢୋଲ ବଜାଇ, ଧାଙ୍ଗଡ଼ାନାଚରେ ମାତି ସେ ସେଇ ବାଘଭାଲୁ-
ମୁଲକରେ ଧନୁଶର ଖଣ୍ଡେ ଧରି ନିର୍ଭୟରେ ଚାଲୁଥିଲା—ଏଇ ତ ଜୀବନ !
ଏହାକୁ ହିଁ ସେ ଉପଭୋଗ କରୁଥିଲା । ବଳିଷ୍ଠ ସ୍ୱାସ୍ଥ୍ୟ, ସରଳ ମନ ଓ
ପ୍ରାଣଖୋଲା ହସ ତା'ର ଜୀବନର ଥିଲା ସମ୍ଭାର । ବାସ୍ତବିକ ଅମୃତର
ସନ୍ତାନ ଏମାନେ !



( ଖଣିରେ କାମ କରୁଥିବା କର୍ମଠ ଆଦିବାସୀ )

ତାର ମୁଲକ ଛଡ଼ା ଆଉ ଅନ୍ୟ ଏକ ମୁଲକ ଅଛି; ଯେଉଁଠାରେ
କି ସଭ୍ୟତାର ବିକାଶ ଘଟିଛି ଏବଂ ଯେଉଁଠି କି ଜୀବନଯାପନ ପ୍ରଣାଳୀକୁ
ସୁଖମୟ କରିବାଦିଗରେ ବିଭିନ୍ନ ଉପାଦାନ ରହିଛି, ସେକଥା ସେ ଆଦୌ
ଭାବି ନ ଥିଲା । ସେ ଭାବୁଥିଲା, ସେ ଏକା ହିଁ ସ୍ୱର୍ଗସୁଖ ଉପଲବ୍ଧି କରୁଛି ।
କିନ୍ତୁ ଆଜି ସେ ଦେଖିଲାଣି ସଭ୍ୟତାର ଆଲୋକ । ଟ୍ରକ୍, ଜିପ୍‌ର ଘର୍ଘର-
ଶବ୍ଦରେ ତା'ର ବସ୍ତି ଅଞ୍ଚଳ ପ୍ରକମ୍ପିତ ହେଲାଣି । ବିଜୁଳିବତୀର ରଶ୍ମି,
ଅନ୍ଧକାର ଭେଦ କରି ଆସି ତା' ଘର ଉପରେ ବି ପଡ଼ିଲାଣି । ପ୍ରତ୍ୟେକ
ଦିନ ସେ କେତେ ପ୍ୟାଣ୍ଟ-କୋଟ୍‌ପିନ୍ଧା ବାବୁମାନଙ୍କୁ ଦେଖିଲାଣି । କେତେ
ବୈଜ୍ଞାନିକ ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ ହେଲାଣି ତା'ର ସେଇ ମୁଲକରେ ।
ବିଶେଷତଃ ଖଣିଜ ଅନୁସନ୍ଧାନ କାର୍ଯ୍ୟ ତ ବେଶୀ ଚାଲିଛି ସେଇ

ଅଞ୍ଚଳରେ । ଆଦିବାସୀପୂର୍ଣ୍ଣ ସେଇ ଘୋର ଜଙ୍ଗଲ ଅଞ୍ଚଳରେ ଭରିରହିଛି ଅତି ମୂଲ୍ୟବାନ୍ ଖଣିଜ ସମ୍ପଦ । ସେହି ଆଦିବାସୀମାନଙ୍କର ରାଜ୍ୟ ଆଜି ହୋଇଉଠିଲାଣି କର୍ମମୁଖର ।

କରଗୋଳା ଗାଁର କେତେକ ଦୂରରେ କେତୋଟି ଆଦିବାସୀ ବସ୍ତି । ସ୍ତ୍ରୀ-ପୁରୁଷ ସବୁ କରଗୋଳା ଖାଦାନ୍‌ରେ କାମ କରନ୍ତି । କରଗୋଳା ପାଖରେ କ୍ରୋମାଇଟ୍ ଖଣିଖୋଳା କାମ ଚାଲିଛି । କେତେକ ମଧ୍ୟ ସନ୍ଥଆଳି ଖଣି ଅଞ୍ଚଳକୁ କାମ କରିବାକୁ ଯାଆନ୍ତି । ବର୍ତ୍ତମାନ ଡେଙ୍କାନାଳ ଡ଼ିଗଣ୍ଡାର ଲୋକମାନେ ଜାଣିଲେଣି ଯେ, ଏଇ ମାଟିଭିତରୁ କେତେ ଜାତିର ମୂଲ୍ୟବାନ୍ ଖଣିଜ ଓ ପଥର ଇତ୍ୟାଦି ବାହାରୁଛି । ଯେଉଁଠି ସେମାନେ ଆଗରୁ ଦେଖୁଥିଲେ ଖାଲି ବଣଜଙ୍ଗଲ, ଅନାବନା ଘାସ ପଡ଼ିଆ, ଦଣ୍ଡା ବା ଖୋଲା ଧାନକ୍ଷେତ, ତା'ର ତଳୁ ସେମାନେ ଦେଖୁଛନ୍ତି କୋଇଲା ବାହାରୁଛି, କିରାସିନି ତେଲ ବି ବାହାରୁଛି ଏବଂ ଆହୁରି କେତେ ମୂଲ୍ୟବାନ୍ ଖଣିଜ ବାହାରୁଛି । ସତେ ! ଏ ମାଟିପେଟରେ କେତେ କଥା ନ ଅଛି ! ଯେଉଁ ମଫସଲର ଲୋକମାନେ ଧାରଣା କରିଥିଲେ ଯେ କେବଳ ସମୁଦ୍ର-ଗର୍ଭରୁ ରତ୍ନ ମିଳେ ବୋଲି, ସେମାନେ ତାଙ୍କ ଗାଁପାଖର ଏବଂ ଘରବାଡ଼ି-ଆଡ଼ ମାଟିତଳୁ ବି ସୁନା, ରୁପା, ତମ୍ବା, ସୀସା, ଲୁହା ଇତ୍ୟାଦି ଧାତୁର ଖଣିଜ ବାହାରୁଥିବାର ଦେଖୁଛନ୍ତି । ବର୍ତ୍ତମାନ ତାଙ୍କର ପ୍ରତ୍ୟୟ ହୋଇଛି ଯେ କେବଳ ସମୁଦ୍ର କାହିଁକି, ପୃଥିବୀର ସବୁଆଡ଼େ, କି ଜଳ—କି ସ୍ଥଳ ସବୁରିତଳେ ଭରିରହିଛି ବହୁ ମୂଲ୍ୟବାନ୍ ରତ୍ନପରି ପଥର ଓ ଖଣିଜ । ଆଣ୍ଟାର୍କ୍‌ଟିକାର ବରଫାବୃତ୍ତ ଅଞ୍ଚଳ ଏବଂ ସାହାରାର ଶୁଷ୍କ ମରୁଭୂମି-ତଳେ ମଧ୍ୟ ମିଳୁଛି ଖଣିଜର ସଂକେତ ।

ମାଟିଉପରେ ଫସଲ କରି ଯେମିତି ତାକୁ ଖାଇ ଆମେ ବଞ୍ଚୁଛୁ, ସେମିତି ମାଟିତଳୁ ବିଭିନ୍ନ ପ୍ରକାରର ଖଣିଜ ଖୋଳି ଏବଂ ତାକୁ ବ୍ୟବହାର କରି ଆମେ ବହୁତ ଦରକାରୀ ଜିନିଷ ତିଆରି କରିପାରୁଛୁ । ଏହି ମାଟି ହିଁ ଆମର ପ୍ରାଣ । ଏ ମାଟିକୁ ଆମକୁ ଚହ୍ଲିବାକୁ ପଡ଼ିବ । ମାଟିଉପରେ ଯେମିତି ଆମେ ଚାଷ କରି, ଉନ୍ନତ ଖତ ଦେଇ ଫସଲ ଉତ୍ପାଦନରେ ଲାଗିବା, ସେମିତି ଆମେ ଲାଗିପଡ଼ିବା ମାଟିତଳୁ ଖଣିଜ ଉଦ୍ଧାର କରିବାରେ । ଆମ ଦେଶ କୃଷିପ୍ରଧାନ ଦେଶ । କୃଷିକୁ ଛାଡ଼ି ଆମେ ଆଗେଇପାରିବା

ନାହିଁ । କୃଷି ସାଙ୍ଗେ ସାଙ୍ଗେ ଆମେ ଆମ ଦେଶର ଶିଳ୍ପର ବିକାଶ କରାଇବା, କଳକାରଖାନା ଖୋଲିବା, ଲୋକମାନଙ୍କୁ କାମ ଦେବା । କଳ-କାରଖାନା ବସାଇ ଆମେ ବିଭିନ୍ନ ଯନ୍ତ୍ରପାତି ତିଆରି କରିବା—ଆମର ବହୁତ ନିତ୍ୟ-ବ୍ୟବହାର୍ଯ୍ୟ ବସ୍ତୁ ତିଆରି କରିବା । ଗ୍ଲେଟ୍ ଛୁଞ୍ଚିଠାରୁ ଆରମ୍ଭ କରି ଆମକୁ ଦ୍ରୁତଗାମୀ ଉଡ଼ାଜାହାଜ ବା ରକେଟ୍ ପର୍ଯ୍ୟନ୍ତ ସବୁ ତିଆରି କରିବାକୁ ପଡ଼ିବ । ଆମେ ଯେପରି ଅଧିକାଂଶଭାବରେ ସ୍ୱାବଲମ୍ବୀ ହୋଇ ପାରିବା—ବିଦେଶୀ ରାଷ୍ଟ୍ର ଉପରେ ଯେମିତି ଆମକୁ ଆଉ ବେଶୀ ନିର୍ଭର କରିବାକୁ ନ ପଡ଼େ । ସବୁବେଳେ ବିଦେଶୀ ରାଷ୍ଟ୍ର ଉପରେ ନିର୍ଭର କରିବା ଉଚିତ ନୁହେଁ । ଏସବୁ କରିବାକୁ ହେଲେ ଆମର ଶିଳ୍ପକୁ ଉନ୍ନତ କରିବାକୁ ପଡ଼ିବ । ଏହା ସଙ୍ଗେ ସଙ୍ଗେ ଦେଶରକ୍ଷାଦିଗରେ ମଧ୍ୟ ଆମକୁ ବିଶେଷ ଦୃଷ୍ଟି ଦେବାକୁ ପଡ଼ିବ—ଆମେ ସବୁବେଳେ ଅନ୍ୟ ଉନ୍ନତ ରାଷ୍ଟ୍ର ସହିତ ପାଦ ମିଳାଇ ଚାଲିବାକୁ ଚେଷ୍ଟା କରିବା ଉଚିତ—ଏଇ କଥାଟିକୁ ଆମ ସରକାର ଆଜି ଭଲଭାବରେ ବୁଝିଛନ୍ତି । ସେଥିପାଇଁ ଘର ହେଉଛି ଯୋଜନା ! ପଞ୍ଚବାର୍ଷିକ ଯୋଜନାଦ୍ୱାରା ଦେଶର ରୂପ ବଦଳାଇବା ପାଇଁ ସରକାର ଲାଗିପଡ଼ିଛନ୍ତି । ଶିଳ୍ପ ଓ କୃଷି ଉଭୟକୁ ଆମେ ଦୃଷ୍ଟି ଦେଇ ଆଗେଇବାକୁ ପଡ଼ିବ । କୃଷିକୁ ଉନ୍ନତ କରିବାକୁ ହେଲେ ଆମକୁ ମାଟି ଉପରକୁ ଦୃଷ୍ଟିଦେବାକୁ ପଡ଼ିବ ଏବଂ ଶିଳ୍ପକୁ ଉନ୍ନତ କରିବାକୁ ଗଲେ ଆମକୁ ମାଟି ଭିତରକୁ ଆଖି ଦେବାକୁ ପଡ଼ିବ । କାରଣ ମାଟିଭିତରୁ ଯେଉଁ ଖଣିଜ ବାହାରିବ, ତାହାହିଁ ହେବ ଶିଳ୍ପବିକାଶ ଦିଗରେ ପ୍ରଧାନ ଉପାଦାନ । ଖଣିଜ ବିନା ଶିଳ୍ପପ୍ରସାର ହୋଇପାରେନା ।

୨

କରଗୋଳା ଗାଁ-ସରପଞ୍ଚଙ୍କ ପାଖକୁ ଚିଠି ଆସିଛି—ଭାରତ ସରକାରଙ୍କର ଭୂତାତ୍ତ୍ୱିକ ସର୍ଭେ ବିଭାଗର ଅଫିସର୍ ଆସିବେ; କ'ଣ ବକ୍ତୃତା ଦେବେ, ଚଳଚ୍ଚିତ୍ର ଦେଖାଇବେ । ସରପଞ୍ଚ ଗ୍ରାମବାସୀଙ୍କୁ ସମ୍ବାଦଟି ଜଣାଇଦେଲେ; ଆଖପାଖ ଗାଁକୁ ମଧ୍ୟ ଖବର ପଠାଇଦେଲେ । ବକ୍ତୃତା କଥା ଛାଡ଼—ସିନେମା ଦେଖା ହେବା କଥା ଶୁଣି ଆଖପାଖ ଗ୍ରାମରୁ ବହୁତ ଲୋକ ସନ୍ଧ୍ୟାବେଳକୁ ଚାଲିଆସିଲେ କରଗୋଳାକୁ । ବହୁତ

ଆଦିବାସୀ ମଧ୍ୟ ଆସିଛନ୍ତି । ଶୀତ ଟିକଏ ଟିକଏ ପଡ଼ିଆସିଥାଏ । ସେଦିନ ସନ୍ଧ୍ୟାରେ ଆଉ ଦେଖିବ କ'ଣ ? କରଗୋଳା ଗାଁ ମେଲଣ ପଡ଼ିଆଟାକ ଲୋକାରଣ୍ୟ ହୋଇଗଲାଣି—ଥାଳି ମାରିଦେଲେ ଝଲିଯିବ । ଅନେକ ମଧ୍ୟ ପ୍ରକୃତ କଥା ନ ବୁଝି ଖାଲି ଗୋଟାଏ ଘୋ'ରେ ଚାଲି ଆସିଥାଆନ୍ତି । ତାଙ୍କ ମନରେ ଭାବୁଥାଆନ୍ତି ଯେ, ଗୋଟାଏ କ'ଣ ଯାହା ହେବ; ବିଶେଷତଃ ସ୍ତ୍ରୀଲୋକମାନେ ଏଇ ଧାରଣା କରି ବହୁତ ଆସିଥାଆନ୍ତି । ସବୁଆଡ଼େ ଆଲୁଅ ପ୍ରଭୃତି ଦିଆହୋଇଗଲା । ସମସ୍ତଙ୍କର ଅପେକ୍ଷା ଥାଏ ଯେ, କେତେବେଳକୁ ସିନେମା ଆରମ୍ଭ ହେବ ।

ଠାକୁରଙ୍କର ସନ୍ଧ୍ୟାଘଣ୍ଟା ବାଜିଲାବେଳକୁ ରାସ୍ତାଆଡ଼ୁ ମଟର-ଶବ୍ଦ ଶୁଣାଗଲା ! ହର୍ଣ୍ଣ ବାଜିଲା—ପଛକୁ ପଛ ହୋଇ ଦୁଇଟି ଗାଡ଼ି ଆସିଗଲା । ଗାଡ଼ି ଦୁଇଟି ମୁହାଁଇଲା ମେଲଣ ପଡ଼ିଆଆଡ଼େ । ଲୋକଙ୍କର ଆଉ ଆନନ୍ଦର ସୀମା ଦେଖେ କିଏ ? ସରପଞ୍ଚ ଓ ଗାଁର ଅନ୍ୟ ମୁଖିଆ ଲୋକମାନେ ଅଫିସରଙ୍କୁ ପାଛୋଟି ଆଣିଲେ । ସଙ୍ଗେ ସଙ୍ଗେ ସବୁ ଆୟୋଜନ ହୋଇଗଲା । ଲୋକମାନେ ଧୀରସ୍ଥିର ହୋଇ ବସିଗଲେ ।

ଅଫିସର ତାଙ୍କ ବକ୍ତୃତା ଆରମ୍ଭ କରିବାପୂର୍ବରୁ ନିଜକୁ ଭାରତୀୟ ଭୂତାତ୍ତ୍ୱିକ ସମୀକ୍ଷାର ଜଣେ କର୍ମଚାରୀ ଏବଂ ଏହି ସଂସ୍ଥାଦ୍ୱାରା ପରିଚାଳିତ ଗାଁଗହଳରେ ଲୋକମାନଙ୍କୁ ଖଣିଜ ସଚେତନ କରିବା ଯୋଜନା ଅନୁସାରେ ତାଙ୍କ ଗ୍ରାମକୁ ଆସିଛନ୍ତି ବୋଲି କହି ବକ୍ତୃତା ଆରମ୍ଭ କଲେ । ବିଷୟ-ବସ୍ତୁ ଥିଲା ଗାଁଗଣ୍ଡାର ଲୋକମାନଙ୍କୁ ଖଣିଜ ଦ୍ରବ୍ୟ ଚିହ୍ନିବା ଏବଂ ଅନୁସନ୍ଧାନ କରିବା ଦିଗରେ ଧାରଣା ଦେବା । ଅଫିସର ଜଣକ ଓଡ଼ିଶାର ଲୋକ । ସେ ତାଙ୍କ ସାଙ୍ଗରେ ଗୋଟିଏ ବାକ୍ସ ଆଣିଥାଆନ୍ତି । ସେ ବାକ୍ସ ଭିତରେ ଗୋଟିଏ ଗୋଟିଏ ଖୋପ ମଧ୍ୟରେ ଗୋଟିଏ ଗୋଟିଏ ଖଣିଜ ସଜା ହୋଇ ରହିଥାଏ । ବିଭିନ୍ନ ପ୍ରକାରର ଖଣିଜ ସେ ବାକ୍ସ ଭିତରେ ଥାଏ । ଲୋକମାନେ ଦେଖିବାପାଇଁ ସେ ବାକ୍ସଟିକୁ ଖୋଲି ଦେଇ ରଖିଥାଆନ୍ତି । ଖଣିଜ ଦ୍ରବ୍ୟ କ'ଣ, ତାହାକୁ କିପରି ଚିହ୍ନିବାକୁ ହେବ, ତା'ର ବ୍ୟବହାର କ'ଣ, ଭାରତରେ ପ୍ରଧାନତଃ କ'ଣ ଖଣିଜ ରହିଛି, ସେଗୁଡ଼ିକର ଉପଯୁକ୍ତ ଅନୁସନ୍ଧାନ ଓ ବ୍ୟବହାରଦ୍ୱାରା କିପରି ଆମର ଉନ୍ନତି ହୋଇପାରେ—ଏସବୁ ବିଷୟ ସେ ଖୁବ୍ ସରଳ ଭାଷାରେ

ଲୋକମାନଙ୍କୁ ବୁଝାଇଦେଲେ । ଓଡ଼ିଶାର ଖଣିଜ ସଂପଦ ସମ୍ବନ୍ଧରେ ମଧ୍ୟ ବିଶେଷ ସୂଚନା ସେ ଦେଲେ । ବୈଜ୍ଞାନିକ ବିଷୟ-ବସ୍ତୁକୁ ସରଳ ଓ ଉପଭୋଗ୍ୟ ଭାଷାରେ ଉଦାହରଣ ସହ ଲୋକମାନଙ୍କ ସମ୍ମୁଖରେ ସେ ଏପରିଭାବରେ ଉପସ୍ଥାପିତ କଲେ ଯେ ଲୋକମାନଙ୍କର ଆଗ୍ରହ ବଢ଼ିଗଲା । ବକ୍ତୃତା ଶୁଣିବାରେ ଲୋକମାନେ ଏପରି ମଜ୍ଜି ଯାଇଥାଆନ୍ତି— ସିନେମା କଥାଟି ସେତେବେଳକୁ ପ୍ରାୟ କାହାରି ମନେ ନ ଥାଏ ।

'ଖଣିଜ' ଶବ୍ଦଟିକୁ ସିନା ଅନେକ ଆଗରୁ ଶୁଣିଥାଆନ୍ତି; କିନ୍ତୁ ପ୍ରକୃତରେ ତାହା କଣ, ସେମାନେ ସେ ବିଷୟରେ ପରିଷ୍କାରଭାବେ ଜାଣି ନ ଥାନ୍ତି । କିନ୍ତୁ ଅଫିସର ଜଣକ ସେଦିନ ତାଙ୍କୁ ବିଷୟଟିକୁ ପ୍ରାଞ୍ଜଳଭାବରେ ବୁଝାଇ ଦେଇ ପାରିଥିଲେ । ସେ କହିଥାଆନ୍ତି ଯେ, ଖଣିଜ ଯେ କେବଳ ଖଣିରୁ ବାହାରେ ତାହା ନୁହେଁ; ଖଣିଜ ମଧ୍ୟ ଅନେକ ସମୟରେ ପୃଥିବୀ-ପୃଷ୍ଠରେ ପାହାଡ଼-ପର୍ବତ ଅଞ୍ଚଳ ଉପରେ ରହିଥାଏ । ଯାହାକୁ ଆମେ ଖଣିଜ କହୁଁ, ତା'ର ଏକ ନିର୍ଦ୍ଦିଷ୍ଟ ରାସାୟନିକ ସଂଗଠନ ଅଛି ଏବଂ ତା'ର ମଧ୍ୟ କେତେକ ଭୌତିକ ଧର୍ମ ଅଛି । ଖଣିଜଗୁଡ଼ିକ ବିଭିନ୍ନ ମୌଳିକ ପଦାର୍ଥର ଅଣୁରେ ଗଢ଼ା । ଯେଉଁ ଅଣୁ ଖଣିଜ ତିଆରି କରନ୍ତି, ସେଗୁଡ଼ିକ ଏକ ନିର୍ଦ୍ଦିଷ୍ଟ କ୍ରମରେ ସୁସଜ୍ଜିତ ହୋଇଥାଆନ୍ତି । କଥାଟି ସମ୍ବନ୍ଧରେ ଲୋକମାନଙ୍କୁ ସ୍ପଷ୍ଟ ଧାରଣା ଦେବାପାଇଁ ସେ କେତେଗୁଡ଼ିଏ ବିଭିନ୍ନ ରଙ୍ଗର ଗ୍ଲେଟ କାଚ ବଲ୍ ଖଞ୍ଜାହୋଇଥିବା ଗୋଟିଏ ମଡ଼େଲ କାଢ଼ି ଦେଖାଇଲେ । ଏହି ଗୋଟିଏ ଗୋଟିଏ ରଙ୍ଗର ବଲକୁ ଗୋଟିଏ ଗୋଟିଏ ମୌଳିକ ପଦାର୍ଥର ଅଣୁ ସହିତ ତୁଳନା କରାଯାଇପାରେ । ମଡ଼େଲ୍‌ଟିକୁ ଗୋଟିଏ ଖଣିଜ ବୋଲି ଧରାଗଲେ ତା ମଧ୍ୟରେ ବଲ୍‌ଗୁଡ଼ିକ ଯେପରି ନିର୍ଦ୍ଦିଷ୍ଟ କ୍ରମରେ ସଜା ହୋଇ ରହିଛି, ଖଣିଜ ମଧ୍ୟରେ ସେହିପରି ବିଭିନ୍ନ ଅଣୁଗୁଡ଼ିକ ସଜା ହୋଇ ରହିଥାଏ । ତେବେ ଅଣୁମାନଙ୍କର ଏହିପରି ସ୍ଥିତିକୁ ଆମେ ଖାଲିଆଖିରେ ଦେଖିପାରୁନାହିଁ । ଏକ୍‌ସରେ' ବା ରଞ୍ଜନରଶ୍ମି ପରୀକ୍ଷାଦ୍ୱାରା ଏହା ଜଣାପାଇଥାଏ । ଅଣୁ-ଗୁଡ଼ିକର ଏହି ସୁସଜ୍ଜିତ ସ୍ଥିତି ହେତୁ ଖଣିଜ ପଦାର୍ଥର ବାହାରେ ବିଭିନ୍ନ ଭୌତିକ ଧର୍ମ ପ୍ରକାଶ ପାଇଥାଏ । ଖଣିଜ ପଦାର୍ଥର କେତେକ ନିର୍ଦ୍ଦିଷ୍ଟ ଭୌତିକ ଧର୍ମ ରହିଛି । ଖଣିଜର ଆକୃତି, ବର୍ଣ୍ଣ, ଜ୍ୟୋତି, କଠିନତା,

ଆପେକ୍ଷିକ ସାନ୍ଦ୍ରତା, ଖଣିଜ ଭାଙ୍ଗିବାର କେତେକ ନିର୍ଦ୍ଦିଷ୍ଟ ଦିଗ ପ୍ରଭୃତି ଏହି ଭୌତିକ ଧର୍ମ ମଧ୍ୟରେ ଅନ୍ତର୍ଗତ । ଖଣିଜର ବର୍ଣ୍ଣ ଛଡ଼ା ଖଣିଜ ଗୁଣ୍ଡର ବର୍ଣ୍ଣ ମଧ୍ୟ ଏକ ବୈଶିଷ୍ଟ ଭୌତିକ ଧର୍ମ । ବିଭିନ୍ନ ଖଣିଜ ମଧ୍ୟରେ ଏହି ଭୌତିକ ଧର୍ମର ପ୍ରକାରଭେଦ ଦେଖାଯାଇଥାଏ ଏବଂ ଏହାଦ୍ୱାରା ଖଣିଜ ଚିହ୍ନିବା ସହଜ ହୋଇଥାଏ ।

ଅଫିସର ବିଭିନ୍ନ ଖଣିଜର ପ୍ରଧାନ ଭୌତିକ ଧର୍ମ ଦେଖାଇବାକୁ ଲାଗିଲେ । ପ୍ରଥମେ ଗୋଟିଏ ଖଣିଜ କାଢ଼ି ସେ କହିଲେ, "ଏଇ ଖଣିଜର ଉପରଟି ଦେଖିବାକୁ ଠିକ୍ ବସନ୍ତ ମୁହଁପରି ଖାଲ ଖାଲ । ଏହାର ନାଁ ହେଉଛି ବକ୍ସାଇଟ୍ । ଏଥିରୁ ଆଲୁମିନିଅମ ଧାତୁ ବାହାର କରାଯାଏ ।" ଏହାପରେ ଆଉ କେତେକ ଖଣିଜ କାଢ଼ି ଦେଖାଇ କହିଲେ, "ଆପଣମାନେ ଦେଖନ୍ତୁ, ଏ ଖଣିଜର ଆକୃତିଟି ଠିକ୍ ଲଙ୍କାଆମ୍ବ ମଞ୍ଜି ପରି । ଏ ହେଉଛି ଲୁହାର ଧାତୁପଥର—ହେମାଟାଇଟ୍ । ଅନେକ ସମୟରେ ମାଙ୍ଗାନିଜ୍ ଧାତୁର ଖଣିଜ ମଧ୍ୟ ଏହି ଆକୃତି ଧାରଣ କରିଥାଏ । ଦେଖନ୍ତୁ, ଏଇ ଖଣିଜଟି ଦେଖିବାକୁ ଝୋଟ ବା ସିଲ୍କ ସୂତା ବଣ୍ଡିଲପରି । ଏହାର ନାଁ ହେଉଛି ଆଜ୍‌ବେଷ୍ଟସ୍; ଏଥିରେ ନିଆଁ ଲାଗେ ନାହିଁ । ଆଜବେଷ୍ଟସ୍ ଆମ ଘରର ଛାତ ତିଆରି କରିବାରେ ଏବଂ ଅଗ୍ନିନିରୋଧ କରିବାରେ ବ୍ୟବହୃତ ହୋଇଥାଏ । ଏ ଖଣିଜଟିକୁ ଦେଖୁଛନ୍ତି ନା ? ଦେଖିବାକୁ କିପରି ଖୁରପାତ ପରି ଦାନ୍ତୁଆ ହୋଇଛି ? ଏ ହେଉଛି କାୟୁନାଇଟ୍ । ବିଶେଷ ଉତ୍ତାପ ସହିଲାପରି ଇଟା ତିଆରି କରିବାରେ ଏହା ବ୍ୟବହୃତ ହୋଇଥାଏ । ଅଭ୍ର ନାଁ ଆପଣମାନେ ଶୁଣିଥିବେ । ଦେଖନ୍ତୁ, ଏହି ଯେଉଁ ପେଟ୍ରୋମାକ୍ସ ଲାଇଟ୍‌ଟି ଥୁଆ ହୋଇଛି, ତାର ଉପର ଢାଙ୍କୁଣୀଟି ଅଭ୍ରରେ ତିଆରି । ତେବେ ଅଭ୍ର ପ୍ରାକୃତିକ ଅବସ୍ଥାରେ କିପରି ମିଳେ ତାହା ଦେଖିବା କଥା ।" ଅଫିସର୍ ପାଖରେ ଥୁଆହୋଇଥିବା ଆଉ ଗୋଟିଏ ବାକ୍ସରୁ ଗୋଟିଏ ବଡ଼ ଅଭ୍ର ଚଦର କାଢ଼ି ଦେଖାଇଲେ । "ଠିକ୍ ବହିରେ ଯେମିତି ପୃଷ୍ଠା ସଜା ହୋଇ ରହିଥାଏ, ସେହିପରି ଅଭ୍ର ବିଭିନ୍ନ ସ୍ତର ବା ପୃଷ୍ଠା ନେଇ ଗଠିତ" —ଏ କଥା କହି ସେ ମୋଟା ଅଭ୍ର ଚଦରରୁ କେତୋଟି ସ୍ତର କାଢ଼ିନେ । ଲୋକମାନେ ଏ କଥା ଦେଖି ଏକଦମ୍ କାବା । ଅଭ୍ର ଯେ

ଏମିତ ସ୍ତର ସ୍ତର ହୋଇ ରହିଥାଏ ଏବଂ ଗୋଟିଏ ବଡ଼ ଅଭ୍ର ଚଦରରୁ ଯେ ଅନେକ ପତଳା ପତଳା ଅଭ୍ର-ପରସ୍ତ ବାହାରିପାରେ, ସେମାନେ ଏହା ଭାବିପାରି ନ ଥିଲେ । ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହୋଇ ରହିଥାଆନ୍ତି । "ବିଦ୍ୟୁତ୍ ଶିଳ୍ପକ୍ଷେତ୍ରରେ ଅଭ୍ରର ଆବଶ୍ୟକତା ଖୁବ୍ ବେଶୀ" —ବଡ଼ ଜୋର ଦେଇ ଅଫିସର ଏ କଥାଟି କହିଲେ ।

ଏମିତ କେବଳ ବାହାର ଆକୃତିରୁ ଅନେକ ଖଣିଜ ଚିହ୍ନା ପଡ଼ିଯାଇଥାଏ । ଏହାଛଡ଼ା ବର୍ଣ୍ଣଦ୍ୱାରା ମଧ୍ୟ ଅନେକ ଖଣିଜ ଚିହ୍ନା-ଯାଇଥାଏ । ବର୍ଣ୍ଣ ସମ୍ବନ୍ଧରେ କହିବାକୁ ଯାଇ ସେ ସୁନା, ସୀସା, ତମା ଓ ପାରଦର ଖଣିଜ କାଢ଼ି ଦେଖାଇଲେ । ଏହି ଖଣିଜଗୁଡ଼ିକ ଯଥାକ୍ରମେ କପରି ସେମାନଙ୍କର ସୁନାପରି ହଳଦିବର୍ଣ୍ଣ, ଉଜ୍ଜ୍ୱଳ ଧୂସରବର୍ଣ୍ଣ, ପିତ୍ତଳପରି ହଳଦିଆ ବର୍ଣ୍ଣ, କେତେକ ଗାଢ଼ ସବୁଜବର୍ଣ୍ଣ ଓ କମଳାଲେମ୍ବୁବର୍ଣ୍ଣଦ୍ୱାରା ପ୍ରଥମରେ ଚିହ୍ନାଯାଇଥାଏ, ସେ ବିଷୟ ବୁଝାଇ ଦେଲେ ।

ସଭାର ଗୋଟିଏ କରକୁ ସ୍ତ୍ରୀଲୋକମାନେ ବସିଥିଲେ । ସୁନାକଥା ପଡ଼ିଲାଠୁ ସେମାନଙ୍କର ଆନନ୍ଦ ଦେଖେ କିଏ ? ଅଫିସରଙ୍କୁ ସୁନାର ଖଣିଜ ପାଖକୁ ଆଣି ଦେଖାଇବାକୁ କହିଲେ । ଅଫିସର ତାଙ୍କ ପାଖକୁ ସେଇଟି ନେଇ ଦେଖାଇ ଆଣିଲେ । କେତେକ ଆଦିବାସୀ ସ୍ତ୍ରୀଲୋକ ସଙ୍ଗେ ସଙ୍ଗେ କହିପକାଇଲେ, "ବାବୁ ! ଏମିତ ରଙ୍ଗର ଚକ୍-ଚକ୍ ଦିଶୁଥିବା ଗୁଣ୍ଡସବୁ ଆମେ କେତେ ନଈବାଲିରୁ ପାଉଚୁ । ତେବେ ସେଗୁଡ଼ିକ କ'ଣ ସୁନା ?" ଅଫିସର 'ହଁ' ଭଣିଲେ ଏବଂ ସୁବର୍ଣ୍ଣରେଖା ନଈବାଲିରୁ କପରି ସିଂହଭୂମ୍ ଓ ଛୋଟନାଗପୁର ଅଞ୍ଚଳର ଆଦିବାସୀମାନେ ସୁନାଗୁଣ୍ଡ ଗୋଟାନ୍ତି, ସେ କଥା କହିଲେ । ଅନେକ ସମୟରେ କେତେକ ଖଣିଜ ଉଜ୍ଜ୍ୱଳବର୍ଣ୍ଣ ଓ କାଚପରି ସ୍ୱଚ୍ଛ ଦିଶୁଥାନ୍ତି । ସେତେବେଳେ ଏହାକୁ ଅଳଙ୍କାର ତିଆରି କରିବାରେ ବ୍ୟବହାର କରାଯାଏ । ଆମେ ମୁଦି ଏବଂ ଅନ୍ୟାନ୍ୟ ଗହଣାରେ ଏହି ପଥରସବୁ ବସାଇଥାଉ । ଏହି ଜାତୀୟ କେତେକ ଖଣିଜ ମଧ୍ୟ ଅଫିସର ଲୋକମାନଙ୍କୁ ଦେଖାଇଲେ ।

ତା'ପରେ ଆରମ୍ଭ ହେଲା ଖଣିଜର ଜ୍ୟୋତି ସମ୍ବନ୍ଧୀୟ କେତେକ କଥା । ଛୋଟ ହୀରାଖଣ୍ଡେ ସେ ଦେଖାଇଲେ । ସୀସା, ଧାତୁ, ପଥର

ଗାଲେନା ମଧ୍ୟ ଦେଖାଇଲେ । ଇସ୍ ! କି ଚକ୍‌ଚକ୍ କରୁଥାଏ ସେଗୁଡ଼ିକ । ହୀରା, ମରକତମଣି, ପଦ୍ମରାଗ, ଚନ୍ଦ୍ରକାନ୍ତମଣି, ନୀଳକାନ୍ତମଣି ପ୍ରଭୃତି ଦେଖି ଲୋକମାନେ କୃତକୃତ୍ୟ ହେଲେ । କେତେ ଲୋକ କହିବାର ଶୁଣାଗଲା—"ଆଜି ଜୀବନ ଧନ୍ୟ ହେଲା । ରଜାଘରେ ସିନା ଏସବୁ ଜିନିଷ ଥାଏ; ଆମେ ବା କାହୁଁ ଏସବୁ ଦେଖିଥାଆନ୍ତେ ? ଆଜି ଏ ବାବୁ ଆମ ଗାଁକୁ ନ ଆସନ୍ତି, କି ଆମେ ଏ ଜିନିଷ ନ ଦେଖୁ । ପ୍ରକୃତିରେ କେତେ ଜିନିଷ ଏ ବସୁନ୍ଧରାତଳେ ନ ରହିଛି !" ମଧୁ ନାୟକ କେଉଁଠି ବସିଥିଲା କେଜାଣି, ବୋଧହୁଏ ଏସବୁ ଦେଖି ନିଜକୁ ଭୁଲିଯାଇଥିଲା—ସାଙ୍ଗେ ସାଙ୍ଗେ ଉଠିପଡ଼ି କହିଲା, "ଆଜ୍ଞା ! କ'ଣ ସୀସା-ପଥର କଥା କହିଲେ; ଆଉ ଥରେ ଟିକିଏ ଦେଖାନ୍ତୁ ଆଜ୍ଞା ।" ଅଫିସର ସୀସା-ପଥରଟିକୁ ଲାଇଟ୍ ପାଖକୁ ଆଣି ଦେଖାଇଲେ । ସେ ଯେପରିଭାବରେ ଚକ୍‌ଚକ୍ କରୁଥାଏ, ମଧୁ ତାକୁ ଦେଖି ଏକବାରେ ତଟସ୍ଥ । ଏହି ଖଣିଜ ରଙ୍ଗ ଟିକିଏ ପାଉଁଶିଆ; କିନ୍ତୁ ଖୁବ୍ ଜ୍ୟୋତି ଏହାର । ମଧୁ ପଚାରିଲା, "ବାବୁ, ଏ କ'ଣ ମାଟିରେ ଏମିତି ଦେଖାଯାଏ ?" ଅଫିସର୍ କହିଲେ—"ହଁ, ଯେଉଁ ଅଞ୍ଚଳରେ ଏ ଖଣିଜ ମିଳେ, ସେଠାରେ ଅନ୍ୟ ପଥର ସାଙ୍ଗରେ ମିଶି ଏ ଏମିତି ଚକ୍‌ଚକ୍ କରୁଥାଏ । ଏ ଖଣିଜ ମଧ୍ୟ ଭାରି ଓଜନିଆ ।" ମଧୁ ମଧ୍ୟ ଖଣିଜଟିକୁ ଧରି ଏହା ଅନୁଭବ କରିନେଲା ।

ଅନେକ ଖଣିଜ ଧାତୁପରି ଜ୍ୟୋତି ଦେଖାନ୍ତି । ଲୁହାପଥର, ମାଙ୍ଗାନିଜ, ଧାତୁ ଖଣିଜ, କ୍ରୋମାଇଟ୍, ସୀସା ତମ୍ବା ଏହିପରି ଖଣିଜ ମଧ୍ୟରେ ଅନ୍ତର୍ଗତ । ଅଫିସର୍ ଗୋଟି ଗୋଟି କରି ଏହି ପଥର ଟେବୁଲ ଉପରେ ସଜାଇ ରଖିଦେଲେ ଏବଂ ଏହି ଖଣିଜରୁ ଯଥାକ୍ରମେ ଲୁହା, ମାଙ୍ଗାନିଜ୍, କ୍ରୋମିଅମ୍, ସୀସା ଓ ତମ୍ବା ପ୍ରଭୃତି ଧାତୁ ବାହାର କରାଯାଏ ବୋଲି ବୁଝାଇ କହିଦେଲେ । ଏ ଧାତୁର ଜ୍ୟୋତି ଛଡ଼ା ଆଉ ଅନ୍ୟ ପ୍ରକାରର ଜ୍ୟୋତି ମଧ୍ୟ ଖଣିଜଠାରେ ଦେଖାଯାଏ । ଝୁଣାପରି ଜ୍ୟୋତି ଗନ୍ଧକଠାରେ, ସିଲ୍‌କର ଜ୍ୟୋତି ଆଜବେଷ୍ଟସ୍‌ଠାରେ, ମୁକ୍ତାର ଜ୍ୟୋତି ଅଭ୍ରଠାରେ, ଏବଂ ମୁଣ୍ଡା ଚକ୍‌ର ଜ୍ୟୋତି ମ୍ୟାଗ୍‌ନେସାଇଟ୍‌ଠାରେ ଦେଖାଯାଇଥାଏ । ଏହି ତେଜ ବା ଜ୍ୟୋତିକୁ ଦେଖି ମଧ୍ୟ ଖଣିଜ ଚିହ୍ନା-ଯାଇ ପାରିବା କଥା ଅଫିସର୍ ଲୋକମାନଙ୍କୁ ବୁଝାଇଦେଲେ ।

କିଛୁ ସମୟପରେ ଅଫିସର୍ ଗୋଟିଏ ଷ୍ଟେଠ ଛୁରୀ, ଗୋଟିଏ ତମ୍ବା ପଇସା, ଗୋଟିଏ ଷ୍ଟେଠ ଭଙ୍ଗା କାଚ ତାଙ୍କ ବ୍ୟାଗରୁ କାଢ଼ିକହିଲେ, "ଏସବୁ ଜିନିଷ ଦେଖି ଆପଣମାନେ ମନେ ମନେ ଆଶ୍ଚର୍ଯ୍ୟ ହୋଇଯାଉଥିବେ । କେହି କେହି ଭାବୁଥିବେ, ମୁଁ ଯେପରି ମେଜିକ୍ ଦେଖାଇବାକୁ ଆସିଛି; କିନ୍ତୁ ତା ନୁହେଁ । ଏହି ଯେଉଁ ଜିନିଷସବୁ ଆପଣମାନେ ଦେଖୁଛନ୍ତି, ଏହା ସାହାଯ୍ୟରେ ମଧ୍ୟ ଆପଣମାନେ ଅଧିକାଂଶ ସମୟରେ ଖଣିଜ ଚିହ୍ନି ପାରିବେ । ତେବେ କଥାଟି ହେଉଛି, କିପରି ଏହା ସାହାଯ୍ୟରେ ଆମେ ଖଣିଜ ଚିହ୍ନିବା । ଆଗରୁ କହିଛି ଯେ ଖଣିଜର ଏକ ନିର୍ଦ୍ଦିଷ୍ଟ କଠିନତା ରହିଛି; ଅର୍ଥାତ୍ ବାହାରୁ କୌଣସି ଆଘାତ ଦିଆଗଲେ ତାକୁ ପ୍ରତିରୋଧ କରିବାର ଶକ୍ତି ମଧ୍ୟ ଏହାର ଅଛି । ଏହି ପ୍ରତିରୋଧ କରିବାର ଶକ୍ତି ହିଁ ହେଉଛି ଖଣିଜର କଠିନତାର ସୂଚକ ଏବଂ ୧, ୨ ଠାରୁ ଆରମ୍ଭ କରି ୧୦ ମଧ୍ୟରେ ଏହା ସୀମାବଦ୍ଧ । ଏହି ସଂଖ୍ୟାଦ୍ୱାରା କଠିନତା ପ୍ରକାଶ କରାଯାଏ । ସବୁଠାରୁ କମ୍ ପ୍ରତିରୋଧ କରିବାର ଶକ୍ତି ଅର୍ଥ ଏହାର କଠିନତା ହେଉଛି ୧ ଏବଂ ସବୁଠାରୁ ବେଶୀ ପ୍ରତିରୋଧ କରିବାର ଶକ୍ତି ଅର୍ଥ ଏହାର କଠିନତା ୧୦ । କେତେକ ଖଣିଜର ଆଗରୁ ଜଣାଥିବା କଠିନତା ସାହାଯ୍ୟରେ କୌଣସି ଏକ ଖଣିଜର ଅଜଣା କଠିନତା ନିର୍ଣ୍ଣୟ କରାଯାଇପାରେ । ଏମିତି ଏକ ବାକ୍ସ ଅଛି; ଯେଉଁଥିରେ କି ୧ ଠାରୁ ୧୦ ପର୍ଯ୍ୟନ୍ତ କଠିନତା ଦେଖାଉଥିବା ଖଣିଜ କ୍ରମାନ୍ୱୟରେ ସଜା ହୋଇ ରଖାଯାଇଥାଏ ଏବଂ ଏହା ସାହାଯ୍ୟରେ କୌଣସି ନୂଆ ଖଣିଜର କଠିନତା ନିର୍ଣ୍ଣୟ କରାଯାଇପାରେ । ଏହି ବାକ୍ସକୁ 'ମୋହଙ୍କର କଠିନତା-ନିର୍ଣ୍ଣୟକାରୀ ବାକ୍ସ' ବୋଲି କୁହାଯାଏ । ତେବେ ଏ ବାକ୍ସ କଥା ଛାଡ଼ । ଅତି ସାଧାରଣଭାବରେ ଏଇ ଯେଉଁ ଛୁରୀ, କାଚ ଓ ପଇସା ପ୍ରଭୃତି ଦେଖୁଛନ୍ତି, ଏହାଦ୍ୱାରା ମଧ୍ୟ ଆପଣମାନେ କଠିନତା ଜାଣିପାରିବେ । ଏହା ସହିତ ନିଜର ଅଙ୍ଗୁଠିର ନଖକୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇପାରେ । ଏହିସବୁ ଜିନିଷଗୁଡ଼ିକର କଠିନତା ଜଣାଅଛି । ନଖର କଠିନତା ହେଉଛି ୧ ଠାରୁ ୨ ଭିତରେ, ତମ୍ବା ପଇସାର ୨ଠାରୁ ୩ ଭିତରେ, ଭଙ୍ଗା କାଚର ୫ ଏବଂ ଛୁରୀର ୫ଠାରୁ ୬ ଭିତରେ । ତେବେ କିପରି ଏହା ସାହାଯ୍ୟରେ କଠିନତା ନିର୍ଣ୍ଣୟ କରାଯାଇ-ପାରିବ, ତା'ର ପ୍ରଣାଳୀ ମୁଁ ବର୍ତ୍ତମାନ କହିବି । ଯେଉଁ ଖଣିଜର କଠିନତା

ଆମେ ବାହାର କରିବା, ତାହା ଉପରେ ଉପରୋକ୍ତ ପଦାର୍ଥଗୁଡ଼ିକୁ କ୍ରମାନ୍ୱୟରେ ପ୍ରୟୋଗ କରିବାକୁ ପଡ଼ିବ । ପ୍ରଥମେ ତା ଉପରେ ଆମେ ନଖର ଗୋଟିଏ ଗାର ଦେବା । ଯଦି ଆମେ ଦେଖିବା ଯେ ନଖ ସେଥିରେ ଗାର ବସାଇପାରିଲା, ତେବେ ଆମେ ଝଟ୍ କରି ଧରିନେବା ଯେ ନଖର କଠିନତା ଖଣିଜର କଠିନତାଠାରୁ ବେଶୀ; କିନ୍ତୁ ଏହା ମାନିନେବା ପୂର୍ବରୁ ଆମକୁ ନଖ ଉପରେ ଖଣିଜର ଗାର ପକାଇବାକୁ ପଡ଼ିବ । ଯଦି ଖଣିଜ ନଖ ଉପରେ ଗାର ଦେଇପାରିଲା, ତେବେ ଖଣିଜ ଓ ନଖର କଠିନତା ଏକ; ଅର୍ଥାତ୍ ଉଭୟେ ସମଭାବରେ ଶକ୍ତ । କିନ୍ତୁ ଯଦି ଖଣିଜ ନଖ ଉପରେ ଗାର ଦେଇ ନ ପାରିଲା, ତେବେ ନିଶ୍ଚୟ ନଖଠାରୁ ନରମ; ଅର୍ଥାତ୍ ନଖର କଠିନତା ୧-୨ ଭିତରେ ରହିଲେ, ଖଣିଜର କଠିନତା ଏହାଠାରୁ କମ୍ । ଯଦି ନଖ ଖଣିଜ ଉପରେ ଗାର ବସାଇ ନ ପାରିଲା ଏବଂ ଖଣିଜ ନଖ ଉପରେ ଗାର ବସାଇପାରିଲା, ତେବେ ଖଣିଜର କଠିନତା ନଖଠାରୁ ବେଶୀ ।

ନଖ ପରେ ଆମକୁ ତମ୍ବା ପଇସା ସାହାଯ୍ୟରେ ଗାର ବସାଇବାକୁ ପଡ଼ିବ । ଯଦି ଆମେ ଦେଖିବା ଯେ ଖଣିଜ ତମ୍ବା ପଇସାଠାରୁ ଅଧିକ କଠିନତା ଦେଖାଉଛି, ତେବେ ଆମେ ଭଙ୍ଗା କାଚଟିକୁ ବ୍ୟବହାର କରିବା ଏବଂ ଭଙ୍ଗା କାଚ ଯଦି ଖଣିଜଠାରୁ କମ୍ କଠିନତା ଦେଖାଏ, ତେବେ ତାପରେ ଆମେ ଛୁରି ସାହାଯ୍ୟରେ ଗାର ଦେବା । ଏହିପରି ଗୋଟିକ ପରେ ଗୋଟିଏ କଠିନତା ଜଣାଥିବା ପଦାର୍ଥକୁ ବ୍ୟବହାର କରି ଖଣିଜର ଅଜଣା କଠିନତା ସମ୍ବନ୍ଧରେ ମୋଟାମୋଟି ଧାରଣା କରିଯାଇପାରେ । ତେବେ ଏ ଯେଉଁ ସୁବିଧା ଜିନଷ ଆମେ ବ୍ୟବହାର କରୁଛୁ, ଏହାଦ୍ୱାରା କେବଳ ୭ ମଧ୍ୟରେ ରହୁଥିବା ଖଣିଜର କଠିନତା ଜଣାଯାଇପାରିବ—୭ ଉପରକୁ ନୁହେଁ । କିନ୍ତୁ ଆଗରୁ କହୁଛି ଯେ, ୧୦ ପର୍ଯ୍ୟନ୍ତ କଠିନତା ଜଣାଥିବା ବିଭିନ୍ନ ଖଣିଜ ରହିଛି । ତାହା ସାହାଯ୍ୟରେ ଖଣିଜର ଏପର୍ଯ୍ୟନ୍ତ କଠିନତା ନିର୍ଣ୍ଣୟ କରିଯାଇ ପାରିବ । ତେବେ ଏହି କଠିନତା ହେଉଛି ଖଣିଜର ଏକ ବିଶିଷ୍ଟ ଧର୍ମ । ଏଇ ଦେଖନ୍ତୁ, ଏ ଖଣିଜଟିର ନାଁ ହେଉଛି ଟାଲ୍କ । ନଖ ବସାଇଦେଲେ କପରି ଏଥିରେ ଏକ ଗାର ପଡ଼ିଯାଉଛି । ତେବେ ଏହାର କଠିନତା ନିଶ୍ଚୟ ୨ଠାରୁ କମ୍ । ଏହି ସ୍ୱଳ୍ପ କଠିନତା ଏବଂ

ଟାଲକ୍ ଯେଉଁ ପାଉଡ଼ରର ଗର ଚକ୍‌କଣ ଲାଗୁଛି, ଏହା ହେଉଛି ଟାଲକ୍‌ର ବୈଶିଷ୍ଟ୍ୟ ଧର୍ମ । ଏହାଦ୍ୱାରା ଟାଲକ୍ ଚିହ୍ନାଯାଇଥାଏ । ଏହି ଟାଲକକୁ ଗୁଣ୍ଡା କରି ଦେହଲଗା ପାଉଡ଼ର ବି ତିଆରି ହୁଏ ।"

ଅଫିସର୍‌ଙ୍କ ଖାଟିରୁ କଥା ସରିଛି କି ନାହିଁ କେଳୁ ପାଟସି ଟାଲକ୍ ଉପରେ ପାଉଡ଼ରର ଘର ଲାଗେ, ଟିକିଏ ଛୁଇଁ ଦେଖିବ ବୋଲି ଠିଆ ହୋଇ ଅନୁରୋଧ ଜଣାଇଲା । ଗାଁକୁ ଗାଁ ବୁଲି ପାଟସି-ବେପାର କରେ ସେ । ପାଉଡ଼ର୍, ଅଲତା, ରିବନ୍ ଫିତା ପ୍ରଭୃତି ମନୋହାରୀ ଜିନିଷ ବୁଲି ବିକିବା ହେଲା ତା'ର ବେଉସା । ଟାଲକ୍ ଖଣିଜରୁ ଯେ ପାଉଡ଼ର୍ ତିଆରି ହୁଏ, ସେ କଥା କେଳୁକୁ ମାଲୁମ୍ ନ ଥିଲା । ତେଣୁ କଥାଟା ଶୁଣିବାମାତ୍ରେ ଆଗ୍ରହରେ ଦେଖିବା ପାଇଁ ଠିଆ ହୋଇ ପଡ଼ିଲା । ଅଫିସର୍ ଟାଲକ୍‌ଟିକୁ ଆଣି ଦେଖାଇଲା ମାତ୍ରକେ କେଳୁ ତାକୁ ଛୁଇଁ କରି ଦେଖିନେଲା । "ସତେତ ! ଠିକ୍ ପାଉଡ଼ର୍ ପରି ଚିକ୍‌କଣ ଲାଗୁଛି; କିନ୍ତୁ ବାସନା ତ କାହିଁ ନାହିଁ ଏଥିରେ ?"—ବଡ଼ ଉତ୍କଣ୍ଠିତ ହୋଇ କେଳୁ ପଚାରିଲା । ଅଫିସର୍ ବୁଝାଇ କହିଲେ, "ଏ ଖଣିଜରେ ସେ ଆମୋଦକର ବାସନା ଆଉ ଆସିବ କୁଆଡ଼ୁ ? ଏ ଗୁଣ୍ଡରୁ ପାଉଡ଼ର୍ ତିଆରି ହେଲାପରେ ସେଥିରେ ସୁଗନ୍ଧ ଦ୍ରବ୍ୟ ପକାଇ ଦିଆଯାଇଥାଏ । ତେଣୁ ଯେଉଁ ପାଉଡ଼ର୍ ଆପଣ ବ୍ୟବହାର କରନ୍ତି ତାହା ବାସନା କରେ ।" ପାଖରେ ବସିଥିବା ମଙ୍ଗୁ ବଗଲ ଫୁସ୍-ଫୁସ୍ କରି କହି ପକାଇଲା—"କ'ଣ କଉ ପାଟସିଏ ! ଏମିତି ବୋକାଙ୍କ ପରି ପ୍ରଶ୍ନ କରୁଛ ? ପିଠିରେ ବୋକ୍‌ସ୍ ବୋହି ବୋହି ତମେ ତ ଥୋଡ଼ିଆ ବଳଦ ପରି ହୋଇଗଲଣି ।"

କେଳୁ ବସୁ ବସୁ ଅତି ଧୀରଭାବରେ କହିଲା "ତମର ଆଉ ଥାନ-ଅଥାନ କିଛି ବିଚାର ନାହିଁ—ସବୁଠି ଏଇ ଥଟ୍ଟା-ତାମସା । ବାବୁ କ'ଣ ଭାବିଥିବେ ?" ମୁହଁରେ ଥିଲା ତାର ବିରକ୍ତିର ଚିହ୍ନ । "ଭାବିବେ ଆଉ କ'ଣ ? ତମେ ସେମିତିଆ ପ୍ରଶ୍ନ ପଚାରୁଛ—ଆଉ ମୁଁ କହିଲାଠୁ ଚିଡ଼ୁଛ । ତୁମେ ଖାଲି ମହାଜନେ ଏଣିକି ଠାକୁରଙ୍କୁ ଡାକ—ତମ ବାରିଆଡ଼େ ଯଦି ଗୋଟାଏ ଟାଲ୍‌କ୍ ଖଣି ବାହାରିପଡ଼େ ନା, ତମେ ଆଉ କ'ଣ ଏମିତିଆ ପିଠିରେ ବୋକ୍‌ସ୍ ବୋହି ପାଟସି-ବେପାର କରିବାକୁ

ଗାଁ-ଗାଁରେ ବୁଲିବ ? ତମ ପାଖକୁ ତ ସେତେବେଳକୁ କେତେ ଲୋକ ଡାକୁଥିବେ । ତମ ଘର କ'ଣ ଆଜି ଏମିତ ଭଙ୍ଗା ବୁଲଘର ହୋଇ ରହିଥିବ, ନା ଝୋଟିମାଟି କାନ୍ଥ ଥିବ ! ତା ସବୁବଦଳ ତମେ ଇଟାଘରଟି ତୋଳିଦେଇବ ।" ମଙ୍ଗଳୁ ବସିକ ବଡ ନଡ଼ସେଇ ନଡ଼ସେଇ ଚୂପଚୂପ୍ କଥାତକ କହୁଥାଏ; କିନ୍ତୁ କେଳୁ ସେତେବେଳକୁ ଉଠି ପୁଣି ପ୍ରଶ୍ନବାଣ ଛାଡ଼ିଲା—ଟାଲ୍କ୍ ଖଣିଜ ଆମ ଦେଶରେ କେଉଁଠି ମିଳେ ଆଜ୍ଞା ?" ଜାଣିବାକୁ ଅତ ଆଗ୍ରହ ଥିଲା ପର ତାଙ୍କ ପ୍ରଶ୍ନରୁ ଜଣାପଡ଼ୁଥିଲା ।

ମଙ୍ଗଳୁ ବଡ଼ ଚିଡ଼ିଗଲା ପରି କହିଲା, "କଉ ! ସବୁ ଶେଷରେ କ'ଣ ଏ ପ୍ରଶ୍ନ ପଚାରିଲେ ହୋଇ ନ ଥାନ୍ତା । ତମର ଆଜ ସମସ୍ତ ବଗ୍ଧର ନାହିଁ । କ'ଣ କେଉଁଠି ଟାଲ୍କ୍ ଖଣି ପଟ୍ଟା ନେବାକୁ ଯାଉଛ କି ! କାହିଁ, ଟାଲକ୍ କୋଉଠି ମିଳୁଛି ସେ ବିଷୟ ଉପରେ ଖାସ୍ ନଜର ।"

ଅଫିସର ଆଉ ଗୋଟିଏ ଖଣିଜ ଦେଖାଇବାକୁ ଯାଉଥିଲେ; କିନ୍ତୁ ପ୍ରଶ୍ନଟି ଶୁଣି ତା'ର ଉତ୍ତର ଦେବାକୁ ଗଲେ—"ଏହି ଖଣିଜ ରାଜସ୍ଥାନରୁ ପ୍ରଧାନତଃ ଉତ୍ପାଦିତ ହେଉଛି । ଜୟପୁର ଜିଲ୍ଲାର ଦାଗୋଠା ଝରଣା, ଭିଲଓ୍ୟାର ଜିଲ୍ଲାର ଘେଓ୍ୟାରିଆ, ଋନ୍ଦପୁର ଏବଂ ଉଦୟପୁର ଜିଲ୍ଲାର ଦେଓପୁର ଅଞ୍ଚଳରେ ଟାଲ୍କ୍ ଖଣି ରହିଛି । ମଧ୍ୟପ୍ରଦେଶର ଜବଲପୁର ନିକଟବର୍ତ୍ତୀ ଭେଡ଼ାଘାଟରେ ମଧ୍ୟ କିଛି ଟାଲ୍କ୍ ମିଳେ ।"

"ଓଡ଼ିଶାରେ ଟାଲ୍କ୍ କେଉଁ ଅଞ୍ଚଳରେ ମିଳେ, ସେ ବିଷୟରେ ଜାଣିବାକୁ ମୁଁ ବେଶୀ ଇଚ୍ଛା କରେ" ଜିଜ୍ଞାସୁ ଭାବରେ କେଳୁ ପଚାରିଲେ ।

"ଓଡ଼ିଶାରେ ଉତ୍କୃଷ୍ଟ ଟାଲ୍କ୍ ଖଣି ନାହିଁ କହିଲେ ଚଳେ ।" —ଦୁଃଖିତ ହୋଇ ଅଫିସର କହିଲେ ।

"ବଞ୍ଚିଗଲା, ବଞ୍ଚିଗଲା । ଓଡ଼ିଶାରେ ତ ଟାଲ୍କ୍ ଖଣି ନାହିଁ; ଆଉ ତମେ ପଟ୍ଟା ନେବ କ'ଣ ପାରିବ ଏ ! ତେବେ ତମେ ଟିକିଏ ନଜର ରଖିଥାଅ ପାରିବ ଏ । ପରେ କେବେବେଳେ ବାହାରିଲେ ତମେ ଯେପରି ଆଗ ସେଥିପାଇଁ ପ୍ରାର୍ଥୀ ହୋଇପଡ଼"—ମଙ୍ଗଳୁ, ପାଟବାଙ୍କର ବଡ଼ ନିକଟକୁ ଲାଗି ଆସି, ବ୍ୟଙ୍ଗପୂର୍ଣ୍ଣଭାବରେ କାନ ପାଖରେ କହିଗଲେ ।

. ଅଫିସର ତାଙ୍କର ବକ୍ତୃତା ଆରମ୍ଭ କରି କହିଲେ, "କେବଳ ଯେ ଟାଲ୍କ୍‌ରୁ ଟାଲ୍‌କମ୍ ପାଉଡ଼ର ତିଆରି ହୁଏ, ତା ନୁହେଁ । କାଗଜ, ରବର, ଲୁଗାକଳ, ରେଡ଼ିଓ, ଟେଲିଭିଜନ୍ ପ୍ରଭୃତିରେ ମଧ୍ୟ ଏହାର ବ୍ୟବହାର ବିଭିନ୍ନ ପ୍ରକାରରେ ହୋଇଥାଏ । ତେବେ ଶୁଣନ୍ତୁ; ଟାଲ୍କ୍ କଥା । ଏଇ ଖଣିଜଟିକୁ ଦେଖନ୍ତୁ । ଏହାର ନାଁ ହେଉଛି ବେରିଲ୍ । ଏହାର କଠିନତା ହେଉଛି ୭ ଠାରୁ ୮ ମଝିରେ । ଆଣବିକଶକ୍ତି ଉତ୍ପାଦନରେ ଏହାକୁ ବ୍ୟବହାର କରାଯାଏ ଏବଂ ଏହା ଏକ ନିୟନ୍ତ୍ରକରୂପେ କାମ କରିଥାଏ । ଅଭ୍ର ସହିତ ବେରିଲ୍ ସାଧାରଣତଃ ମିଳିବାର ଦେଖାଯାଏ । ରାଜସ୍ଥାନ, ବିହାର ଓ ଆନ୍ଧ୍ର ପ୍ରଦେଶର ଅଭ୍ରଖଣି ଅଞ୍ଚଳରୁ ବେରିଲ୍ ମିଳିଥାଏ । ଗାଢ଼ ନୀଳ ରଙ୍ଗର ବେରିଲ୍ ମୂଲ୍ୟବାନ୍ ପଥର ହିସାବରେ ବ୍ୟବହୃତ ହୁଏ । ଏହାକୁ କୁହାଯାଏ ଏମରାଲ୍‌ଡ଼୍ । ରାଜସ୍ଥାନରେ ଏମରାଲ୍‌ଡ୍ ଖଣି ରହିଛି । ଏଇଟି ହେଉଛି ଗ୍ରାଫାଇଟ୍ । ଏଥିରେ ମଧ୍ୟ ନଖଦ୍ୱାରା ଗାର ପଡ଼ଯାଏ । ଏହାକୁ ଧରିଲେ ହାତ ଥଣ୍ଡା ଲାଗେ ଏବଂ କାଗଜରେ ଏହା ଗାର ପକାଇଦିଏ । ଏହାକୁ ବ୍ୟବହାର କରି ଲେଖିବା ପେନ୍‌ସିଲ ତିଆରି ହୁଏ । ଏ ହେଉଛି ଜିପ୍‌ସମ୍ । ଏହାର କଠିନତା ହେଉଛି ୨ । ଏହି ନମ୍ର କଠିନତା ଏହାର ପ୍ରଧାନ ଧର୍ମ । ଜିପ୍‌ସମ୍‌କୁ ସାର ତିଆରି କରିବାରେ ବ୍ୟବହାର କରାଯାଏ । କାଚର କଠିନତା ୫ ବୋଲି ଆଗରୁ କହିଛି । ଏ ଯେଉଁ ଖଣିଜ ଦେଖୁଛନ୍ତି, ଏହାର କଠିନତା ମଧ୍ୟ ୫ । ଏହାର ନାଁ ହେଉଛି ଆପାଟାଇଟ୍ । ଫସ୍‌ଫରସ୍ ଉତ୍ପାଦନରେ ଏହାକୁ ବ୍ୟବହାର କରାଯାଏ । ତା' ପରେ ଆପଣମାନଙ୍କୁ ଦେଖାଇବି କ୍ୱାର୍ଟ୍‌ଜ ବା ସ୍ଫଟିକ । ଏହାର କଠିନତା ହେଉଛି ୭ । ଏକଜାତୀୟ ବିଶେଷ ବିଦ୍ୟୁତ୍‌ଶକ୍ତି ଉତ୍ପାଦନରେ ଏହାକୁ ବ୍ୟବହାର କରାଯାଏ । ସେହିପରି ୩ କଠିନତା ଦେଖାଉଥିବା ଏହି କାଲ୍‌ସାଇଟ୍ ଖଣିଜକୁ ପଥର ଓ ଖଣିଜ ଚିହ୍ନିବା ପାଇଁ ତିଆରି ହେଉଥିବା ଅଣୁବୀକ୍ଷଣ-ଯନ୍ତ୍ରରେ ବ୍ୟବହାର କରାଯାଏ । ତେବେ ଏହିପରିଭାବରେ ଆପଣମାନେ ଜାଣିବା ଉଚିତ ଯେ, କେବଳ କଠିନତା ସାହାଯ୍ୟରେ ଅନେକ ଖଣିଜ ଚିହ୍ନାଯାଇପାରେ ଏବଂ ଆପଣମାନେ ଏହି ଗୁରୁତ୍ୱପୂର୍ଣ୍ଣ ପଦାର୍ଥକୁ ବ୍ୟବହାର କରି ବାହାରେ ଅନେକ ଖଣିଜ ଚିହ୍ନିପାରିବେ ।"

ଖଣିଜର କଠିନତା ସମ୍ବନ୍ଧରେ ବସ୍ତୁତଃଭାବରେ ବୁଝାଇ ଅଫିସର ଏତକ କଥା କହିଲେ । ଲୋକମାନେ କଥାଗୁଡ଼ିକୁ ବେଶ୍ ଭଲଭାବରେ ବୁଝିପାରିଲେ ।

ତା'ପରେ ଆଉ କେତେକ କୌତୂହଳ କଥା କହିବାକୁ ସେ ଆରମ୍ଭ କଲେ । କେତେକ ଖଣିଜ କିପରି ଶୁଙ୍ଘି କରି ଜଣାଯାଇପାରେ, ଅନେକ କିପରି ଅନୁଭବଦ୍ୱାରା ଜଣାଯାଇପାରନ୍ତି ଏବଂ ଅନେକ ମଧ୍ୟ ଜିଭରେ ଚାଖିବାଦ୍ୱାରା ଚିହ୍ନା ପଡ଼ିଥାଆନ୍ତି, ସେ ବିଷୟ ଉଦାହରଣ ଦେଇ ବୁଝାଇବାକୁ ଲାଗିଲେ । ଗ୍ରାଫାଇଟ୍ ଓ ଟାଲ୍କ୍ କିପରି ଅନୁଭବଦ୍ୱାରା ଚିହ୍ନାଯାଇଥାଆନ୍ତି, ସେ ବିଷୟ ସେ ଆଗରୁ କହିସାରିଥାଆନ୍ତି । ଏଥର ସେ ଆଉ କେତେକ ନୂଆ ଖଣିଜ କଥା କହିବାକୁ ଲାଗିଲେ । "ସେଇଟି ହେଉଛି ସିଲମାନାଇଟ୍ । ଏହାକୁ ଧରିପକାଇଲେ ତା ଦେହରୁ ଆଂଶୁ ବାହାରି ହାତରେ ଫୋଡ଼ି ହୋଇଯାଏ । ଏହାଦ୍ୱାରା ସେ ଖଣିଜ ଚିହ୍ନାଯାଇଥାଏ । ଆର୍ସେନିକ୍ ଧାତୁ ବାହାରୁଥିବା ଏହି ଖଣିଜ ଆର୍ସେନୋ ପାଇରାଇଟ୍‌କୁ ହାତରେ ଘଷିଦେଲେ ତାହା ରସୁଣପରି ଗନ୍ଧ କରେ । ଏହା ହେଉଛି ତା'ର ପ୍ରଧାନ ଗୁଣ । ଏ ଯେଉଁ ଚିନାମାଟି ଓ ଅଗ୍ନିମାଟି ଖଣିଜ ଦେଖୁଛନ୍ତି, ତା ଉପରେ ପାଟିରୁ ଟିକେ ପବନ ଫୁଙ୍କି ଦେଇ ପରେ ଶୁଙ୍ଘିଲେ ତାହା ଠିକ୍ ଓଦା ସୋରାଇ ଉପରୁ ଆସୁଥିବା ମାଟିର ଗନ୍ଧପରି ଜଣାଯାଏ । ହାଲାଇଟ୍ ବା ବ୍ୟବହାର କରାଯାଉଥିବା ସାଧାରଣ ଲୁଣ ଏ ଯେଉଁ ଦେଖୁଛନ୍ତି, ତାହା ମଧ୍ୟ ଖଣିଜ ମଧ୍ୟରେ ଅନ୍ତର୍ଭୁକ୍ତ ଏବଂ ଚାଖିକରି ଏହା ଚିହ୍ନା ହୋଇଯାଇଥାଏ । ଏହିପରି ଶୁଙ୍ଘି, ଛୁଇଁ ଏବଂ ଚାଖି ଅନେକ ଖଣିଜ ଚିହ୍ନାଯାଇଥାଏ । କିପରି ସରଳ ଉପାୟ ଏଗୁଡ଼ିକ ! ଖଣିଜ ଚିହ୍ନିବାରେ କେତେ ଏହାର ଆବଶ୍ୟକତା !" ପ୍ରତ୍ୟେକ ଖଣିଜ ଉପରେ ପରୀକ୍ଷା ଚଳାଇ ସେ ଏସବୁ କହିଗଲେ ।

୦

୮ ତା'ପରେ ଗୋଟିଏ ଧଳା ପ୍ଲେଟ୍ ଅଫିସର ବାହାର କଲେ; ଦେଖିବାକୁ କିନ୍ତୁ ପ୍ଲେଟ୍‌ପରି ଚିକ୍କଣ ନୁହେଁ । ଏହି ଧଳା ପ୍ଲେଟ୍ ଉପରେ ବା ଶିଳପରି ପଥର ଖଣ୍ଡରେ (ଯାହାକି ଚିକ୍କଣ ହୋଇ ନ ଥିବ) ଧାତୁ ପଥରର ଗାର ପକାଇ, ସେ ଗାରର ରଙ୍ଗରୁ କିପରି ସେଗୁଡ଼ିକ ଚିହ୍ନାଯାଇଥାଏ ତାହା ସେ ଦେଖାଇଲେ । ହେମାଟାଇଟ୍ ଓ ମ୍ୟାଗ୍-

ନେଟାଇଟ୍ ନାମକ ଦୁଇ ଜାତିର ଲୁହାପଥର ଏହି ଗାରର ରଙ୍ଗରୁ ହିଁ ଚିହ୍ନା ପଡ଼ିଯାଇଥାଏ । ହେମାଟାଇଟ୍‌ର ଗାର ଦେଖିବାକୁ ଜାମୁକୋଳି ରଙ୍ଗପରି; କିନ୍ତୁ ମ୍ୟାଗ୍‌ନେଟାଇଟ୍ ଗାରର ରଙ୍ଗ ବାଦାମୀ । ସେହିପରି ତମ୍ବା ଧାତୁପଥରର ଗାର ଦେଖିବାକୁ ସବୁଜ ଓ କଳାରଙ୍ଗମିଶା ଏବଂ ଏହି ଗାର ଟିକିଏ ଚକ୍-ଚକ୍ କରେ । ସୀସା ପଥରଗାର ଫିକା କଳା ଏବଂ ଅଳ୍ପ ଚକ୍-ଚକ୍ କରେ । ଏହି ଗାର ଧାତୁ ଖଣିଜ ଚିହ୍ନିବାରେ ବିଶେଷ ସାହାଯ୍ୟ କରିଥାଏ । ଗୋଟି ଗୋଟି କରି ଏହି ବିଭିନ୍ନ ଧାତୁପଥରର ଗାର ପକାଇ ସେ ଏ ବିଷୟରେ ଲୋକମାନଙ୍କ ମନରେ ଏକ ସ୍ପଷ୍ଟ ଧାରଣା ଆଣିଦେଲେ ।

ପାଣ୍ଡୁ ପଧାନ ଠିକ୍ ସଭାର ସାମନାସାମନି ବସିଥିଲା । ସପନ ମାଝିକୁ ଚିପ ମାରି କହିଲା, "ଆରେ ଦେଖିଲୁ ! ଯେମିତି କଷଟି ପଥରରେ ବଣିଆ ଗାର ପକାଇ ସୁନା ଚିହ୍ନେ; ଏ ତ ଠିକ୍ ସେମିତି ।"

ସପନ କଥାଟାକୁ ଠିକ୍ ବୁଝି କହିଲା, "ହଁ ରେ ! ଏମିତି ଗ୍ଲେଟ-ଗ୍ଲେଟିକିଆ ଉପାୟ କରି ଯେ ଏତେ ପଥର ଚିହ୍ନାଯାଇପାରେ, ସେ କଥା କ'ଣ ଆମରି ଏଇ ମୂଳଆମୁଣ୍ଡ ଜାଣିପାରିଥିଲା ? ରଙ୍ଗ ଦେଖି, ତେଜ ଦେଖି, ପୁଣି ତା'ର ଗାର ଦେଖି, ତା'ର ଟାଣୁଆପଣ ଦେଖି, ତାକୁ ଛୁଇଁ, ଶୁଙ୍ଘି ଏବଂ ଚାଖି ଯେ ଏତେ ସୁବିଧାରେ କେତେ କେତେ ଦାମିକା ପଥର ଚିହ୍ନାପଡ଼ିପାରୁଛି, ଆଜି ଏ ବାବୁ ସେ ବିଷୟ ନ କହିଥିଲେ, ଆମେ ବା ଜାଣିଥାନ୍ତୁ କେଉଁଠି ? କିଏ ବା ଆମକୁ ଏ ବିଷୟ କହିଥାଆନ୍ତା ! କାହା ମୁହଁ ଦେଖି ଆଜି ସକାଳୁ ଉଠିଥିଲେ କେଜାଣି, ବହୁତ ନୂଆ ନୂଆ କଥା କିନ୍ତୁ ଶୁଣିଲେ ! ଆଉ ତୁ କହୁଥିଲୁ, ଆଜି ବେଲବୁଡ଼େ ଗଉଡ଼ସାହିକି ଯାଇ ତାସ ଖେଳିବାକୁ—କି ରେ ! ତାସ ଖେଳିବାକୁ ଯାଇଥିଲେ ଆମ୍ଭେ ଏସବୁ କଥା ଜାଣିଥାନ୍ତେ କିପରି ? ପ୍ରତ୍ୟକ୍ଷ ଆଖିରେ ଦେଖିଥାଆନ୍ତେ କେଉଁଠି ? ଖାଲି ଯାହା ପରେ ଶୁଣିଥାନ୍ତେ ନା···ଉଁ··· ଆଉ ତୁ ନିଜେ ଶୁଣିଲୁ, ତୁ ସେକଥା ଶୁଣି କ'ଣ କହିଥାଆନ୍ତୁ । ସିଧାସଳଖ ଗାଲୁଭୁରୁଡ଼ି ଦେଖାଇ ଫାଙ୍କି ଦେଇଥାଆନ୍ତୁ ।"

ପାଣୁ କହିଲା—"ଆରେ, ମୁଁ କ'ଣ ଜାଣିଛି ଆଜି ଗୋଟିଏ ଏମିତି ସଭା ହେବ ! ଭୋଟ ହୋଇଥିଲାବେଳେ ସଭା ହୁଏ । କେତେ ଲୋକ କେତେ କଥା ବଖାଣି ଗର୍ଜ୍ଜନ-ତର୍ଜ୍ଜନ କରନ୍ତି । ମୁଁ ଭାବିଥିଲି, ସେମିତି ଗୋଟାଏ କ'ଣ ସଭା ହେବ; କିନ୍ତୁ ଆଜି ଏ ଯେଉଁ ସଭା ହେଲା, ମୋତେ ଆସି ତ' କୋଡ଼ି ଦଶ ବରଷ ବୟସ ହେଲାଣି ସପନ, ଏମିତି ସଭା ମୁଁ ଦେଖି ନ ଥିଲି । ଆଜି ତ ଆଖିରେ ଏସବୁ ଦେଖିଲି; ଆଉ ଫାଙ୍କିବ କାହାକୁ ? ମଣିଷ ବିଦ୍ୟାବୁଦ୍ଧିଦ୍ୱାରା ଯେ କ'ଣ କରି ନ ପାରେ, ମୁଁ ତାକୁହିଁ ଭାବୁଛି । ଆଉ ଗୋଟାଏ ବଡ଼ କଥା ସପନ ! ଏସବୁ ପାଠକଥା କହିଲେ ମୁଁ ଭାବେ, ବହୁତ ବଡ଼ ବଡ଼ ମେସିନ୍ ସାହାଯ୍ୟରେ ଏ କାମ ହେଉଥିବ । କିନ୍ତୁ ଆଜି ଏ ବାବୁ ଯେଉଁ କଥା କହିଲେ, ତା ପାଇଁ ତ ପଇସା-କଉଡ଼ି କିଛି ପଡ଼ୁନାହିଁ । ଏମିତି ସାଧାସିଧା ଟୁଣୁକାଟୁଣିକ ଉପାୟ କରି ଯଦି ଆମେ ଏତେ କଥା ଜାଣିପାରୁ, ତେବେ ଆଉ ବଡ଼ ବଡ଼ ଯନ୍ତ୍ରପାତି ସାହାଯ୍ୟରେ ଆଉ କେତେ କଥା ଜଣାପଡ଼ୁ ନ ଥିବ ! ଆମେ ଏ ପାହାଡ଼-ମୂଲକରେ ବୁଲିଲାବେଳେ ଅନେକ ଜିନିଷ ଦେଖିଥିବା; କିନ୍ତୁ ତାକୁ ତ ଚିହ୍ନିବାକୁ ଚେଷ୍ଟା କରିନୁ—ଦେଖିଦେଇ ସେମିତି ଛାଡ଼ିଦେଉଛୁ । ଆମଠୁ ବଳି ବୋକା ଆଉ କିଏ ଅଛି ? ଏଣିକି ଏମିତି ବୁଲିଲା ବୁଲିଲା-ବେଳେ ଏସବୁ ଜିନିଷ ଚିହ୍ନିବାକୁ ଆମେ ଟିକିଏ ଚେଷ୍ଟା କରିବା । ହଉ ଶୁଣ, ବାବୁ ପୁଣି କ'ଣ କହିଲେଣି ।"

ଖଣିଜର ବିଭିନ୍ନ ପ୍ରଧାନ ଭୌତିକ ଧର୍ମ ଓ ଏହାକୁ କିପରି ଚିହ୍ନା-ଯାଇପାରିବ, ସେ ବିଷୟ ବୁଝାଇ କହିସାରିଲାପରେ ଏହାର ସୃଷ୍ଟି ସମ୍ବନ୍ଧରେ ସୂଚନା ଦେବାକୁ ଯାଇ ଅଫିସର ପୁଣି କହିଲେ, "ବିଭିନ୍ନ ଅଜୈବିକ ଉପାୟରେ ଖଣିଜ ସୃଷ୍ଟି ହୋଇଥାଏ । କୋଇଲା, କିରୋସିନ ତେଲ ଜୈବିକ ଉପାୟରେ ସୃଷ୍ଟି ହୋଇଥିଲେ ମଧ୍ୟ ଏହାର ଉପଯୋଗିତା-ଦୃଷ୍ଟିରୁ ଏହାକୁ ଖଣିଜ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଏ । ଅନେକ ଖଣିଜ କେବଳ ସାଧାରଣ ଶିଳା ତିଆରି କରନ୍ତି ଏବଂ ଆଉ କେତେକ ଧାତୁ ବାହାରିବା ପଥର ତିଆରି କରନ୍ତି । ବିଭିନ୍ନ ପାହାଡ଼ ଓ ମୁଣ୍ଡିଆ ସ୍ତୂପଗୁଡ଼ିକରେ ଯେଉଁ ସାଧା ପଥର ଆମେ ଦେଖୁ, ତାହା ବିଭିନ୍ନ ଖଣିଜର ସମଷ୍ଟିରେ ଗଠିତ ହୋଇଥାଏ ।" ଗୋଟିଏ ପଥର ଆଣି ଅଫିସର ଗୁଣ୍ଡା

କରିଦେଲେ ଏବଂ ଏହି ଗୁଣ୍ଡକୁ ଗୋଟିଏ ଉଚ୍ଚ କାଚପାତ୍ରରେ ଥିବା ପାଣି ପରି ଦେଖାଯାଉଥିବା ତରଳ ପଦାର୍ଥ ମଧ୍ୟକୁ ଗୁରୁଡ଼ିଦେଲେ । କିଛି ସମୟ ପରେ ଦେଖାଗଲା ଯେ ତଳଠାରୁ ଉପର ପର୍ଯ୍ୟନ୍ତ ତିନି ସ୍ତରୀୟ ସ୍ଥାନରେ ସେହି ତରଳ ପଦାର୍ଥ ମଧ୍ୟରେ କିଛି କିଛି ଗୁଣ୍ଡ ଜମା ହୋଇ ରହିଛି । ପ୍ରତ୍ୟେକ ଗୁଣ୍ଡର ବର୍ଣ୍ଣ ଅନ୍ୟଟିଠାରୁ ପୃଥକ୍ । ସେହି ଗୁଣ୍ଡକୁ ଦେଖାଇ ଅଫିସର କହିଲେ, "ଏଇ ଯେଉଁ ତିନି ସ୍ତରୀୟ ସ୍ତର ଦେଖୁଛନ୍ତି, ପ୍ରତ୍ୟେକ ସ୍ତରରେ ଏକଜାତୀୟ ଖଣିଜ ଜମା ହୋଇଯାଇଛି । ତା'ର ଅର୍ଥ—ଏହି ଯେଉଁ ପଥରକୁ ଗୁଣ୍ଡ କରାଗଲା, ତାହା ସେଇ ତିନି ସ୍ତରୀୟ ଖଣିଜକୁ ନେଇ ଗଠିତ । ବର୍ତ୍ତମାନ ଆପଣମାନେ ଆଉ କେବେ ଅବିଶ୍ୱାସ କରିପାରିବେ ନାହିଁ ଯେ ଶିଳା ଖଣିଜକୁ ନେଇ ଗଠିତ ନୁହେଁ ।"

ଅଫିସର ପୁଣି କହିବାକୁ ଲାଗିଲେ, "ତେବେ ଆପଣମାନେ ଦେଖୁଛନ୍ତି ଯେ ଖଣିଜରୁ କେତେ କଥା ଜାଣି ହୋଇପାରେ ଏବଂ ସେଗୁଡ଼ିକ ମଧ୍ୟରୁ କେତେକ କିପରି ସହଜରେ ବିନା ପଇସା-ଖର୍ଚ୍ଚରେ ଚିହ୍ନାଯାଇପାରେ । ଆପଣମାନଙ୍କୁ ମୁଁ ଏକ ବିଶେଷ ସୂଚନା ଦେଉଛି ଯେ ସରକାର ମୂଲ୍ୟବାନ୍ ଖଣିଜ ଚିହ୍ନି ତାକୁ ଲୋକସମ୍ମୁଖକୁ ଆଣିଲେ ପୁରସ୍କାର ଦେବେ ବୋଲି ଘୋଷଣା କରିଛନ୍ତି । ଭାରତ ସରକାରଙ୍କର ଭୂତତ୍ତ୍ୱ-ସମୀକ୍ଷା ଗାଁଗଣ୍ଡାରେ ସାଧାରଣ ଲୋକଙ୍କୁ କିପରି ଖଣିଜ ଚିହ୍ନିବା ବିଷୟରେ ଧାରଣା ଦିଆଯାଇ ପାରିବ ଏବଂ ଲୋକମାନେ ଖଣିଜ ସମ୍ବନ୍ଧରେ କିପରି ସଚେତନ ରହିବେ, ସେଥିନିମନ୍ତେ ଏକ ଯୋଜନା ତିଆରି କରିଛନ୍ତି—ଯାହା ଫଳରେ କି ମୁଁ ଆପଣମାନଙ୍କ ପାଖକୁ ଆଜି ଆସିବାର ସୁଯୋଗ ପାଇଛି । ମୋ ପରି ଆହୁରି ଅନେକ କର୍ମଚାରୀ ଭାରତର ବିଭିନ୍ନ ଅଞ୍ଚଳର ଗାଁଗଣ୍ଡାମାନଙ୍କୁ ଯାଇ ଲୋକମାନଙ୍କୁ ଖଣିଜ ସମ୍ପଦ ସମ୍ବନ୍ଧରେ ବୁଝାଉଛନ୍ତି । ସରକାର ଯେଉଁ ପଞ୍ଚବାର୍ଷିକ ଯୋଜନା ତିଆରି କରିଛନ୍ତି, ସେଥିରେ ଖଣିଜ ସମ୍ପଦର ବିକାଶ ଓ ବିନିଯୋଗ ଦିଗରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ଖଣିଜ ସମ୍ପଦର ବିକାଶ ବିନା କୌଣସି ଦେଶ ସମୃଦ୍ଧ ହୋଇ ନ ପାରେ । ଶିଳ୍ପ, କୃଷି, ଦେଶରକ୍ଷା ସବୁପାଇଁ ଲୋଡ଼ା ବିଭିନ୍ନ ପ୍ରକାର ଖଣିଜ । ଖଣିଜ ସମ୍ପଦର ଅନୁସନ୍ଧାନ

ଯେ କେବଳ ଭୂତତ୍ତ୍ୱବିତ୍‌ଦ୍ୱାରା ହୋଇପାରେ, ତା ନୁହେଁ । ଆପଣ-ମାନଙ୍କ ପରି ସାଧାରଣ ଜନତାର ମଧ୍ୟ ଏ ଦିଗରେ ସାହାଯ୍ୟ ଆବଶ୍ୟକ । ଏଇ ପାହାଡ଼-ପର୍ବତ ମୂଳକରେ ଅପର୍ଯ୍ୟାପ୍ତ ଖଣିଜ ଭର୍ତ୍ତି ହୋଇ ରହିଛି । ଅନେକ ସମୟରେ ହୁଏତ ଭୂତତ୍ତ୍ୱବିତ୍‌ପକ୍ଷରେ ସବୁଜାଗାକୁ ଯିବା ସମ୍ଭବ ହୋଇ ନ ପାରେ; କିନ୍ତୁ ହୁଏତ ଏଇ ଆଦିବାସୀ ଭାଇମାନେ ସେ ସମସ୍ତ ଜାଗାକୁ ନିଶ୍ଚୟ ଯାଉଥିବେ—ଶିକାର କରିବାକୁ ହେଉ, ଜାଳେଣୀ ସଂଗ୍ରହ କରିବାକୁ ହେଉ ବା ଯେ କୌଣସି ଫଳମୂଳ ସଂଗ୍ରହ କରିବାକୁ ହେଉ । ଆପଣମାନଙ୍କ ମଧ୍ୟରୁ ଅନେକ ପାହାଡ଼-ପର୍ବତ ଅଞ୍ଚଳରେ ସାଧାରଣଭାବରେ ମଧ୍ୟ ବୁଲୁଥିବେ । ଯଦି ଖଣିଜ ଚିହ୍ନିବାର ସାଧାରଣ ଉପାୟ ଜାଣିଥାନ୍ତି ଏବଂ ଯଦି ଆପଣ ଅନୁଭବ କରିଥାନ୍ତି ଯେ ଖଣିଜ ବୋଲି ଗୋଟାଏ ଜିନିଷ ଅଛି ଯାହା କି ମଣିଷର ଉପକାରରେ ଲାଗିପାରେ, ତେବେ ନିଶ୍ଚୟ ଆପଣ ତାକୁ ଖୋଜି ବାହାର କରିବାରେ ଆଗ୍ରହୀ ହେବେ ଏବଂ ଆପଣମାନଙ୍କ ଦ୍ୱାରା ମଧ୍ୟ ଅନେକ ମୂଲ୍ୟବାନ ତଥ୍ୟ ଲୋକଗୋଚରକୁ ଆସିପାରିବ । ବାହାରେ ବୁଲିଲାବେଳେ ଆଖି ଖୋଲି ରଖି ଏଣ୍ଡୁ ମାଟିଗୋଡ଼ିପରି ପଡ଼ିରହିଥିବା ଖଣିଜକୁ ସାଧାରଣ ଉପାୟରେ ପରୀକ୍ଷା କରି ହୁଏତ ଆପଣମାନେ ଦିନେ ଅତି ମୂଲ୍ୟବାନ୍ ଖଣିଜର ସନ୍ଧାନ ପାଇପାରିବେ । କେବେ ଦରକାର କେବଳ ତୀକ୍ଷ୍ଣ ନଜର ।”

୩

ଏତିକିବେଳେ ସରପଞ୍ଚ ଉଠିପଡ଼ି କହିଲେ, “ଆଜ୍ଞା ! ଆମର ଏ ସୁନ୍ଦରଗଡ଼ ଅଞ୍ଚଳରେ ବହୁତ ଲୁହାପଥର ଓ ଡୋଲୋମାଇଟ୍ ଖଣିଜ ତ ମିଳୁଛି । ଏ ଅଞ୍ଚଳରେ ତ ବହୁତ ସର୍ଭେ କାମ ଚାଲିଛି । କେତେ କେତେ ସାହେବ ଆସୁଛନ୍ତି । ତମ୍ବୁ ପକାଇ ଆପଣଙ୍କ ଜିଓଲଜିକାଲ୍ ସର୍ଭେବାଲା ତ ଅନୁସନ୍ଧାନ କରୁଛନ୍ତି । ଗଲାବର୍ଷ ଶୀତଦିନେ ଆମର ଏ ଗାଁପାଖରେ ତମ୍ବୁ ପଡ଼ିଥିଲା । ଦୁଇଜଣ ଅଫିସର ଆସି ରହିଥିଲେ । ସକାଳୁ ଉଠି ଆମେ ଦେଖୁଁ ଯେ ଦୁଇଜଣ କରି ଲୋକଙ୍କୁ ଧରି ସାଙ୍ଗରେ ଖାଇବା ଜିନିଷ, ପିଇବା ପାଣି ପ୍ରଭୃତି ନେଇ ବ୍ୟାଗ୍, ହାତୁଡ଼ୀ, ଆଉ କେତେକ ଯନ୍ତ୍ର,

ଫଟୋ ଉଠାଇବା କ୍ୟାମେରା ଇତ୍ୟାଦି ଧରି ସେମାନେ ସବୁ ବାହାରି ପଡ଼ନ୍ତି ପାହାଡ଼ ଆଡ଼କୁ । ସନ୍ଧ୍ୟାବେଳକୁ ଯାଇ ଫେରନ୍ତି ।" ପାଖରେ ବସିଥିବା ଆକୁଳକୁ ଧନ୍ଦି କହିଲେ, "କଅଣ ଆକୁଳ, ତମେ ତ ଆଉବର୍ଷ ବାବୁମାନଙ୍କ ସାଙ୍ଗରେ ଅନେକ ବୁଲୁଥିଲ । ଭାରି କଷ୍ଟକାମ ନୁହେଁ ?"



( ପ୍ରକୃତିର ମନୋରମ ପରିବେଶ ମଧ୍ୟରେ ଭୂତତ୍ତ୍ୱବିଦ୍‌ର ନିବାସ )

ଆକୁଳ ସଙ୍ଗେ ସଙ୍ଗେ କହିପକାଇଲା, "ସେ କଥା ଆଉ ପଚାରୁଛନ୍ତି ଆଜ୍ଞା ! ସେ ପଥରବାବୁଙ୍କ ସଙ୍ଗ ବୁଲି ବୁଲି ବେଳବୁଡ଼ିଲୁ ଫେରିଲାବେଳକୁ ଦିହରେ ଆଉ କିଛି ନ ଥାଏ । ବାବୁ ! ଆମଠୁ ତାଙ୍କର ଭାରି ଧୈର୍ଯ୍ୟ । ପଥର ଛାଣ୍ଡିବା ବାବୁଙ୍କ ଦିହ ପଥରପରି ଟାଣ ଓ ଶକ୍ତ ।"—ସରପଞ୍ଚ ହସି ଦେଇ କହିଲେ, "ଆରେ ପଥରବାବୁ କ'ଣ ସେମାନେ ହେଉଛନ୍ତି ଜିଓଲଜିଷ୍ଟ୍ ।"

ସରପଞ୍ଚ ପୁଣି ଆରମ୍ଭ କଲେ, "ତେବେ ଆମେ ଶୁଣିଲୁ ଯେ, ଏ ବାବୁମାନେ କ୍ରୋମାଇଟ୍ ଖଣିଜ ଅନୁସନ୍ଧାନ କରିବାକୁ ଆସିଛନ୍ତି ।

ଆପଣ ଟିକଏ ଏ ଅଞ୍ଚଳର ଲୁହାପଥର ଓ କ୍ରୋମାଇଟ୍ ବିଷୟ କହିଲେ ଭଲ ହୁଅନ୍ତା ।"

ଟାଁର ହୋମିଓପାଥିକ୍ ଡାକ୍ତର ମଦନବାବୁ ସରପଞ୍ଚଙ୍କୁ ସମର୍ଥନ ଜଣାଇ କହିଲେ, "ହଁ, ଆମେ ତ ଖବରକାଗଜରୁ ପଢ଼ୁଛୁ ଯେ ଆମର ଏ ସୁକିନ୍ଦା ଅଞ୍ଚଳରେ ପ୍ରଚୁର ଲୁହାପଥର ଓ କ୍ରୋମାଇଟ୍ ରହିଛି ବୋଲି । ଡମକା-ଦଇତାରି ଖଣିରୁ ଲୁହାପଥର ବିଦେଶକୁ ରପ୍ତାନି କରାଯିବ ବୋଲି ସରକାର ସ୍ଥିର କରିଛନ୍ତି । ସେଥିପାଇଁ ତ ପାରାଦ୍ୱୀପ ବନ୍ଦର ତିଆରି କାମ ଖୁବ୍ ଜୋର୍‌ସୋର୍‌ରେ ଆଗେଇ ଚାଲିଛି । ତା ସହିତ ଖଣି ଅଞ୍ଚଳରୁ ବନ୍ଦର ପର୍ଯ୍ୟନ୍ତ ଲୁହାପଥର ବୋହିନେବା ଗାଡ଼ି ଯିବାଆସିବା କରିବା ପାଇଁ ଏକ୍‌ସପ୍ରେସ୍ ରାସ୍ତା ତିଆରି ହେଉଛି । ତେବେ ଏସବୁ ବିଷୟରେ ଆପଣ ଟିକଏ ଦୟାକରି କୁହନ୍ତୁ । ଲୋକମାନେ ଏ ବିଷୟ ଜାଣିବା ପାଇଁ ଭାରି ଆଗ୍ରହୀ ଅଛନ୍ତି ।"

ଅଫିସର ଲୋକମାନଙ୍କର ଆଗ୍ରହ ଦେଖି ବିଶେଷ ଉତ୍ସାହିତ ହୋଇଗଲେ । ଡାକ୍ତରଙ୍କ ପାଟିରୁ କଥା ନ ସରୁଣୁ କହିଲେ, "ହଁ, ଏ ବିଷୟ ତ ଠିକ୍ ମୁଁ କହିବାକୁ ଯାଉଥିଲି ।" ଅଫିସର ଟିକଏ ଆଗେଇ ଆସିଲେ ଏବଂ ଆରମ୍ଭ କଲେ, "ଓଡ଼ିଶାରେ ବିଭିନ୍ନ ପ୍ରାକୃତିକ ସମ୍ପଦ ପରିପୂର୍ଣ୍ଣ ହୋଇ ରହିଛି । ଖଣିଜ ଓ ବନ୍ୟ-ସମ୍ପଦ ପ୍ରଚୁର ପରିମାଣରେ ଆମ ରାଜ୍ୟରେ ରହିଛି, ବଡ଼ ବଡ଼ ନଦୀ ମଧ୍ୟ ରହିଛି ଏବଂ ପ୍ରାୟ ୨୫୦ ମାଇଲ ଲମ୍ବର ଉପକୂଳ ଅଞ୍ଚଳ ରହିଛି । ଶିଳ୍ପବିକାଶ ପାଇଁ ପ୍ରଧାନତଃ ଚାରୋଟି ଜିନିଷ ଦରକାର—ସେଗୁଡ଼ିକ ହେଲା କଞ୍ଚାମାଲ, ବିଦ୍ୟୁତ୍ ବା ଇନ୍ଧନ, ଶ୍ରମିକ ଏବଂ ଶିଳ୍ପଜାତ ଦ୍ରବ୍ୟ ପାଇଁ ଚାହିଦା ଓ ବିକ୍ରୟ ନିମନ୍ତେ ବଜାର । ପ୍ରଥମ ତିନୋଟି ଜିନିଷ ଓଡ଼ିଶାରେ ଭରପୂର ରହିଛି ଏବଂ ଶେଷ ଜିନିଷଟି ପାଇଁ ଆମ ରାଜ୍ୟ ଭିତରେ ଓ ବାହାରେ ସୁବିଧା ରହିଛି । ଅମାପ ପ୍ରାକୃତିକ ସମ୍ପଦ ଥାଇ ମଧ୍ୟ ଓଡ଼ିଶା ଆଜି ଦରିଦ୍ର । ଆମ ରାଜ୍ୟର କଞ୍ଚାମାଲକୁ ବ୍ୟବହାର କରି ଆମ ରାଜ୍ୟରେ ଶିଳ୍ପ-କାରଖାନା ଯଥେଷ୍ଟ ପ୍ରତିଷ୍ଠିତ ହୋଇନାହିଁ; ବରଂ ଆମ ପ୍ରଦେଶର କଞ୍ଚାମାଲ୍ ନେଇ ଅନ୍ୟ ପ୍ରଦେଶରେ ଅନେକ କଳକାରଖାନା

କଆଯାଇଛି । ଏଇ ଦେଖନ୍ତୁ, ଓଡ଼ିଶାର ଲୁହାପଥର ବ୍ୟବହାର କରି ଟାଟା ଲୁହାକାରଖାନା କପରି ସମୃଦ୍ଧ ହୋଇଛି । ଓଡ଼ିଶାର ଖଣିଅଞ୍ଚଳ ପଟ୍ଟା ନେଇ ଓଡ଼ିଶା ବାହାରର ଲୋକମାନେ କପରି ଲକ୍ଷ ଲକ୍ଷ ଟଙ୍କାର ବ୍ୟବସାୟ ଚଳାଉଛନ୍ତି ।

"ଖଣିଜ ସମ୍ପଦରେ ଓଡ଼ିଶାର ସ୍ଥାନ ସମସ୍ତ ଭାରତବର୍ଷରେ ଅତି ଉପରେ । ଏ ତ ଆମର ମାଟି ନୁହେଁ—ଏ ହେଉଛି ସୁନା । ଏଇ ମାଟିତଳେ ଯେ କେତେ ଖଣିଜ ଭରିରହିଛି, ତା ଆପଣ କଳ୍ପନା କରିପାରିବେ ନାହିଁ । ଓଡ଼ିଶାର ମାଟି ଓ ଓଡ଼ିଶାର ମଣିଷଙ୍କ ମଧ୍ୟରେ ଯେଉଁ ବୈଷମ୍ୟ ରହିଛି, ତା ଦେଖିଲେ ବଡ଼ ଦୁଃଖ ଲାଗେ । ଏହି ଖଣିଜ ସମ୍ପଦର କେବଳ ବିକାଶ ହେଲେ ଓଡ଼ିଶା ଯେ ସମଗ୍ର ଭାରତବର୍ଷରେ ଏକ ସମୃଦ୍ଧିଶାଳୀ ରାଷ୍ଟ୍ରରୂପେ ଠିଆ ହୋଇପାରିବ, ଏଥିରେ କୌଣସି ସନ୍ଦେହ ନାହିଁ । ବିଭିନ୍ନ ପ୍ରକାର ଶିଳ୍ପ ପ୍ରତିଷ୍ଠା ପାଇଁ ଓଡ଼ିଶାରେ ଲୁହାପଥର, ମାଙ୍ଗାନିଜ୍ ଧାତୁପଥର, କ୍ରୋମାଇଟ୍, ଚୂନପଥର, ଗ୍ରାଫାଇଟ୍, ବକ୍ସାଇଟ୍, ଚିନାମାଟି ଓ ଅଗ୍ନିମାଟି ପ୍ରଚୁର ପରିମାଣରେ ରହିଛି । ସେଗୁଡ଼ିକର ସଦ୍‌ବ୍ୟବହାର ହୋଇ ଉପଯୁକ୍ତ ଶିଳ୍ପ-କାରଖାନା ପ୍ରତିଷ୍ଠା ହେଲେ ଓଡ଼ିଶାର ଆଜି ଏ ଦରିଦ୍ର ଅବସ୍ଥା ରହିବ ନାହିଁ । ସେତେବେଳେ ଓଡ଼ିଶା ହସିଉଠିବ । ଓଡ଼ିଶାର ଭାଗ୍ୟ ପରିବର୍ତ୍ତନ ହୋଇଯିବ । ତେବେ ସେ ଦିନ ଆଉ ବେଶୀ ଡେରି ନାହିଁ, ଯେତେବେଳେ କି ଆଧୁନିକ ବିଜ୍ଞାନର ସ୍ପର୍ଶ ପାଇ ଓଡ଼ିଶା 'ସୁନାର ଓଡ଼ିଶା' ହୋଇ ମୁଣ୍ଡ ଟେକିବ ।"

ଅଫିସର ଓଡ଼ିଶାର ଖଣିଜ ସଂପଦ ସମ୍ବନ୍ଧରେ କହିବାକୁ ଯାଇ ବଡ଼ ଗୌରବାନ୍ୱିତ ହୋଇ ଉଠୁଥିଲେ ଏବଂ ବଡ଼ ଉତ୍ତେଜିତ ହୋଇପଡ଼ୁଥିଲେ । ଓଡ଼ିଶାର ଖଣିଜ ସଂପଦ ସମ୍ବନ୍ଧରେ ଏକ ପ୍ରାଥମିକ ସୂଚନା ଦେଇ ସେ ପୁଣି ଆରମ୍ଭ କଲେ, "ଓଡ଼ିଶାର ଲୁହାପଥର, ପାରଦ୍ୱୀପ ବନ୍ଦର ଇତ୍ୟାଦି ବିଷୟ ଆପଣମାନେ ଜାଣିବାକୁ ବିଶେଷ ଇଚ୍ଛା କରନ୍ତି । ବେଶ୍ କଥା—

"ଆପଣମାନଙ୍କୁ ଏହି ସୁକିନ୍ଦା ଅଞ୍ଚଳର ଲୁହାପଥର ଓ କ୍ରୋମାଇଟ୍ ସମ୍ବନ୍ଧରେ କହିବା ପୂର୍ବରୁ ଭାରତରେ ଲୁହାପଥର ଓ କ୍ରୋମାଇଟ୍ କେଉଁ କେଉଁ ଅଞ୍ଚଳରେ ମିଳେ, ସେ ବିଷୟ ଆଗ କହିବା ଉଚିତ ମନେ କରୁଛି । ଭାରତରେ ବିହାର ଓ ଓଡ଼ିଶାରେ ସବୁଠାରୁ ବେଶୀ ଲୁହାପଥର ରହିଛି । ଏହାଛଡ଼ା ମଧ୍ୟପ୍ରଦେଶର ବସ୍ତର ଜିଲ୍ଲାର ବୈଲାଡ଼ିଲା, ରାଓଘାଟ ଏବଂ ଦୁର୍ଗ ଜିଲ୍ଲାର ଧଲ୍ଲୀ ଏବଂ ରାଜହରା ଏବଂ ଗୁନ୍ଦା ଜିଲ୍ଲାର ପିପ୍ଲାଗାଁ ଅଞ୍ଚଳରେ ଉତ୍କୃଷ୍ଟ ଲୁହାପଥର ରହିଛି । ଆନ୍ଧ୍ର ପ୍ରଦେଶର କର୍ଣ୍ଣୁଲ୍ ଓ କଡ଼ାପ୍ପା ଜିଲ୍ଲା, ମାନ୍ଦ୍ରାଜର ସାଲେମ୍ ଓ ତିରୁଚିନାପଲ୍ଲୀ ଏବଂ ମହୀଶୂରର ସିମୋଗା ଜିଲ୍ଲାର କେତେକ ଅଞ୍ଚଳରେ ମଧ୍ୟ ଲୁହାପଥର ରହିଛି । ପଞ୍ଜାବର ପାତିଆଲା ଅଞ୍ଚଳର ନାର୍ନାଉଲ୍, ରାଜସ୍ଥାନର ଆଲ୍‌ୱାର୍, ଜୟପୁର, ଯୋଧପୁର, ଉଦୟପୁର, ଉତ୍ତରପ୍ରଦେଶର ନୈନିତାଲ୍, ଆଲ୍‌ମୋରା, କାଶ୍ମୀରର ଜାମୁ ଏବଂ ଉଧାମପୁର, ପଶ୍ଚିମ-ବଙ୍ଗର ବୀରଭୂମ ଓ ରାଣୀଗଞ୍ଜ ଏବଂ ଆସାମର କେତେକ ଅଞ୍ଚଳରେ ଅଳ୍ପ ବହୁତ ଲୁହାପଥର ଦେଖିବାକୁ ମିଳେ । ଗୋଆରେ ମଧ୍ୟ ଲୁହାପଥର ମିଳୁଛି । ବିହାରର ସିଂହଭୂମ୍ ଜିଲ୍ଲାର ନୂଆମୁଣ୍ଡି, ଗୁଆ, ବଡ଼ଜାମ୍ଦା ଏବଂ ଓଡ଼ିଶାର କେନ୍ଦୁଝର ଜିଲ୍ଲାର ଜୋଡ଼୍, କିରିବୁରୁ, ବୋଲାନି, ଠାକୁରାଣୀ, ଗନ୍ଧମାର୍ଦ୍ଦନ, ଦଇତାରି; କଟକ ଜିଲ୍ଲାର ଆପଣଙ୍କର ଏଇ ସୁକିନ୍ଦା, ଟମକା ଅଞ୍ଚଳ; ସୁନ୍ଦରଗଡ଼ ଜିଲ୍ଲାର ବଣାଇ ଏବଂ ମୟୂରଭଞ୍ଜ ଜିଲ୍ଲାର ଗୋରୁମହିଷାଣୀ, ବାଦାମପାହାଡ଼, ସୁଲାଇପାଟ ଅଞ୍ଚଳରେ ବହୁତ ପରିମାଣରେ ଉଚକୋଟୀର ଲୁହାପଥର ଅଛି । ତା'ଛଡ଼ା କୋରାପୁଟ ଜିଲ୍ଲାର ହୀରାପୁରଠାରେ ମଧ୍ୟ ଲୁହାପଥର ମିଳୁଛି । ଭାରତରେ ଯେତେ ଲୁହାପଥର ଅଛି, ତା'ର ପରିମାଣ ପ୍ରାୟ ଦୁଇହଜାର ଏକଶହ କୋଟି ଟନ୍ ହେବ । ପୃଥିବୀର ସମୁଦାୟ ଲୁହାପଥର ଖଣିଜର ଚାରି ଭାଗରୁ ଭାଗେ ରହିଛି ଆମର ଏଇ ଭାରତରେ । ଓଡ଼ିଶାରେ ଉତ୍କୃଷ୍ଟ ଧରଣର ଲୁହାପଥର ପ୍ରାୟ ଏକହଜାର କୋଟି ଟନ୍ ରହିଛି—ତା' ମାନେ ଭାରତର ଲୁହାପଥରର ପ୍ରାୟ ଅଧେ ରହିଛି ଓଡ଼ିଶାରେ । ଏ ତ କିଛି କମ୍ ଗୌରବର କଥା ନୁହେଁ । ଆଜି ଆମର ଏହି ଲୁହାପଥର ହେଉଛି



( ନୂଆମୁଣ୍ଡି ପାହାଡ଼ରେ ଲୁହାପଥର ଖନନର ଦୃଶ୍ୟ )



( ଟମକା ପାହାଡ଼ରେ ଲୁହାପଥର ଖନନ )



(ଗୋରୁମହିଷାଣୀ ପାହାଡ଼ରେ ଲୁହାପଥର ବୋହିନେବାପାଇଁ ବାସ୍କେଟ ରଜ୍ଜୁ ସଡ଼କ—
ପଶ୍ଚାଦ୍‌ଭାଗରେ ପାହାଡ଼ର ଶୀର୍ଷଦେଶରେ ଆବିଷ୍କାରକ
ଭୂତତ୍ତ୍ୱବିଦ୍ ପି. ଏନ୍. ବୋଷଙ୍କର ସ୍ମାରକୀ )



( ଗୋରୁମହିଷାଣୀ ପାହାଡ଼ରେ ଲୁହାପଥର ବୋହି ନେଇ ଆସୁଥିବା ଟ୍ରଲି )

ପୃଥିବୀର ସବୁଠାରୁ ଉତ୍କୃଷ୍ଟ ଧରଣର ଲୁହାପଥର । ଏଥିରେ ଶତକଡ଼ା ୬୮ ଭାଗ ଲୁହା ଅଂଶ ଅଛି । ଖାଲି କ'ଣ ସେତିକି ! ମୟୂରଭଞ୍ଜ ଜିଲ୍ଲାର ବେତଝରଣ ଓ କୁମାରଡ଼ୁବି ଅଞ୍ଚଳରେ ଯେଉଁ ଲୁହାପଥର ମିଳୁଛି, ସେଥିରେ ଭାନାଡ଼ିଅମ୍ ଏବଂ ଟାଇଟାନିଅମ୍ ନାମକ ଆଉ ଦୁଇଟି ଧାତୁ ମିଶି ରହିଛି । ସେହି ଭାନାଡ଼ିଅମ୍‌ମିଶା ଲୁହାପଥର ପରିମାଣ ପ୍ରାୟ ଦୁଇ କୋଟି ଟନ୍ ହେବ । ଏହି ଭାନାଡ଼ିଅମ୍ ଧାତୁ ଏକଜାତୀୟ ଶକ୍ତ ଇସ୍ପାତ୍ ତିଆରି କରିବାରେ ବ୍ୟବହୃତ ହୁଏ ।

ପାହାଡ଼ରୁ ସାଧାରଣତଃ ଦୁଇ ଜାତିର ଲୁହାପଥର ମିଳିଥାଏ । ଗୋଟିକର ନାଁ ହେଉଛି ହେମାଟାଇଟ୍ ଏବଂ ଅନ୍ୟଟିର ନାଁ ହେଉଛି ମ୍ୟାଗ୍‌ନେଟାଇଟ୍ । ମୟୂରଭଞ୍ଜର ଭାନାଡ଼ିଅମ୍ ଏବଂ ଟାଇଟାନିଅମ୍ ଧାତୁ ମିଶିରହିଥିବା ଲୁହାପଥର ମ୍ୟାଗ୍‌ନେଟାଇଟ୍ ଶ୍ରେଣୀର ଅଟେ । ବାକି ସବୁଆଡ଼େ କେବଳ ହେମାଟାଇଟ୍ ଜାତିର ଲୁହାପଥର ମିଳେ । ସରକାର ଏହି ଭାନାଡ଼ିଅମ୍ ଧାତୁ ଥିବା ଲୁହାପଥରକୁ ନେଇ ଏକ ଫେରୋ-ଭାନାଡ଼ିଅମ୍ କାରଖାନା ବସାଇବେ ବୋଲି ବିଚାର କରୁଛନ୍ତି ।" ଅଫିସର ଲୋକମାନଙ୍କୁ ଦେଖାଇବା ନିମନ୍ତେ ଓଡ଼ିଶାର କେତେକ ଅଞ୍ଚଳର ଲୁହାପଥର ଟେବୁଲ ଉପରେ କାଢ଼ି ସଜାଇ ଦେବାକୁ ଲାଗିଲେ ।

ଅଫିସରଙ୍କର ଏ କଥା ଶୁଣି ମାଣୁ ସପନକୁ କହିଲା, "ହଇ ରେ ସପନ ! ବାବୁ ତ ହେଇଟି କହୁଛନ୍ତି ଯେ ଆମ ଓଡ଼ିଶାରେ ଏତେ ଜାଗାରେ ଲୁହାପଥର ରହିଛି; ପୁଣି ଏତେ ଭଲ ଜାତିର । ଆରେ, ମୁଁ ପରା ଗଲା ମାସରେ ମୋ ସମ୍ବନ୍ଧୀଘର କେନ୍ଦୁଝର ଜିଲ୍ଲା ଜୋଡ଼ାକୁ ଯାଇଥିଲି ଯେ ସେଠି ଯାହା ଦେଖିଲି, ମୁଁ ତ ବାବା ହୋଇଯାଇଛି । ଜୋଡ଼ାଠାରେ ଟାଟା କମ୍ପାନୀ ଯେଉଁ ଲୁହାପଥର କାଳମାଟିର ଲୁହା କାରଖାନାକୁ ନେଉଛନ୍ତି, ସେ କଥା ଆଉ କ'ଣ କହିବି ! ସେ ତ ଲୁହା-ପଥର ନୁହେଁ; ଠିକ୍ ମୁଣ୍ଡା ଲୁହା ଯେମିତି, ସେମିତିକା ଦେଖିବାକୁ । ଶୁଣିଲି ଯେ ଆମ ଓଡ଼ିଶାରେ ଯେତେ ଜାଗାରେ ଲୁହାପଥର ମିଳୁଛି, ସେ ଲୁହାପଥର କୁଆଡ଼େ ସବୁଠାରୁ ହାଇକ୍ଲାସର । ସେଠି ଆଉ ମାଟି ବୋଲି କିଛି ଜିନିଷ ତ ନାହିଁ । ମାଟି ମାନେ ତ ଲୁହାପଥର । ହଇ ରେ, ମାଙ୍ଗାନିଜ୍ ବୋଲି ଯାହା କହିଲେ, ସେ ଧାତୁର ପଥର ବି ବାହାରୁଛି । ପାହାଡ଼ଗୁଡ଼ାକ



( ପୂର୍ବ-ଜୋଡ଼ାଠାରେ ଲୁହାପଥର ଚୂର୍ଣ୍ଣ କରିବା ଯନ୍ତ୍ରଘର )

ସବୁ ଲୁହାପଥରରେ ଭିଆରି । ମୁଁ ତ ଜାଣୁଛି, ସେଇ ଜୋଡ଼ା-ବଡ଼ବିଲ ଅଞ୍ଚଳରେ ଏଇ ଲୁହାପଥର ଆକାରରେ ଟଙ୍କା ଗୁଡ଼ ଗୁଡ଼ କରି ଥୁଆ ହୋଇଛି । କନ୍ତୁ ଏତେ ଦାମିକା ଜିନଷ ଏ ମାଟିରେ ଥାଇ ବି ଆମେ ଯୋଉ ଗରିବକୁ ସେଇ ଗରିବ ·· ।"

ପାଣୁ ଏମିତି ସପନକୁ କହୁ କହୁ ସରପଞ୍ଚ ତ ଠିକ୍ ପାଖ ବେଞ୍ଚରେ ବସିଥିଲେ, କଥାଟାକୁ ଶୁଣି କହିଲେ, "କେତେ ଫୁସୁରୁ ଫୁସୁରୁ ହେଉଛ ? ଆରେ, ଗରିବ ସିନା ଥିଲେ । ଆଉ କିଛିଦିନପରେ ଦେଖ ତମ ଚେହେରା ବଦଳିଯିବ ।"

ପାଣୁ—'ହଁ ଆଜ୍ଞା ! ବଞ୍ଚିଲେ ତ !"

ସରପଞ୍ଚ—"ଆରେ, ତମେ ବଞ୍ଚି ନ ଥିଲେ ତ ତମ ପିଲାଏ ଥିବେ । ତମ ଜମାନା ଅଲଗା ଥିଲା; ଅଧିକାଂଶ ଦିନ କଟିଗଲା ବ୍ରିଟିଶ ସରକାରରେ । ତମକୁ ସେ ଶୁପିକରି ରଖିଥିଲେ । ଏଇନେ ସ୍ୱାଧୀନ ସରକାର ହେଲା । ତମ ପାଇଁ ସବୁ ସୁବିଧା ସରକାର କଲେ । ପାଠଶାଠ ପଢ଼ିବା ପାଇଁ କେତେ ସ୍କୁଲ-କଲେଜ ହେଲାଣି, କ'ଣ ଦେଖୁନ । ଲୋକଙ୍କର ଆଖି ଖୋଲିଲାଣି । ଏ ଯେଉଁ ଏତେ ଖଣିଜ ସମ୍ପଦ ଆମର ଅଛି, ସେ-ଗନ୍ତାଘର ଏଥର ଫିଟିବାକୁ ବସିଲାଣି । ଏଣିକ ଆମେ ବଳକା ଖଣିଜ ବିଦେଶକୁ

ଉତ୍ପାଦନ କରିବା । ଆମ ନିଜ ରାଜ୍ୟରେ କଳକାରଖାନା ବସାଇ ତାକୁ ବ୍ୟବହାର କରିବା । ଏସବୁ ହେଲେ ଆଉ ଗରିବ କଥା ଉଠୁଚି କୋଉଠୁ ? ବାବୁ ଯେଉଁ କଥା କହୁଛନ୍ତି, ତାକୁ ଭଲକରି ଶୁଣ ।"

"ଏ ଯେଉଁ ଏତେ ଲୁହାପଥର ଆମ ଦେଶରେ ଅଛି, ତାକୁ ବ୍ୟବହାର କରି ବର୍ତ୍ତମାନ ଲୁହା ଉତ୍ପାଦନ ପାଇଁ ବେସରକାରୀ କ୍ଷେତ୍ରରେ ଭଦ୍ରାବତୀ, ଜାମସେଦପୁର ଓ ବର୍ଣ୍ଣପୁରଠାରେ ଏବଂ ସରକାରୀ କ୍ଷେତ୍ରରେ ରାଉରକେଲା, ଭିଲାଇ ଓ ଦୁର୍ଗାପୁରଠାରେ ଲୁହା ଓ ଇସ୍ପାତ୍ କାରଖାନା ସ୍ଥାପିତ ହୋଇଛି । ଏହାଛଡ଼ା ବିହାର ପ୍ରଦେଶର ବୋକାରୋଠାରେ ଆଉ ଗୋଟିଏ କାରଖାନା ବସାଯିବାର ଉଦ୍ୟମ ହେଉଛି । ଭାରତର ଅର୍ଥନୈତିକ ଉନ୍ନୟନ ପାଇଁ ଲୌହପିଣ୍ଡ ଓ ଇସ୍ପାତର ଆବଶ୍ୟକତା ବେଳକୁ ବେଳ ବୃଦ୍ଧି ପାଉଛି । ଆମର ତୃତୀୟ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ଲୁହାପିଣ୍ଡ ଉତ୍ପାଦନ ୧ କୋଟି ଟନ୍ ହେବ ବୋଲି ଅଟକଳ କରାଯାଇଛି । ଚତୁର୍ଥ ଯୋଜନା ଶେଷ ସୁଦ୍ଧା ଭାରତରେ ବାର୍ଷିକ ଏକ କୋଟି ଅଶି ଲକ୍ଷ ଟନ ଇସ୍ପାତ୍ ଆବଶ୍ୟକ ପଡ଼ିବ । ଏହି ଯୋଜନାକାଳ ମଧ୍ୟରେ ବୋକାରୋ ଲୁହା ଇସ୍ପାତ କାରଖାନାରୁ ତିରିଶ ଲକ୍ଷ ଟନ ଲୁହା ଉତ୍ପାଦନ କରାଯିବାର ପ୍ରସ୍ତାବ ରହିଛି । ଆସନ୍ତା ୧୯୬୫ ମସିହା ସୁଦ୍ଧା ଆମର ରାଉରକେଲା କାରଖାନାର ଉତ୍ପାଦନ ୧୮ ଲକ୍ଷ ଟନ ହେବ ବୋଲି ଧାର୍ଯ୍ୟ କରାଯାଇଛି । ଏହା ବ୍ୟତୀତ ଆହୁରି ଦୁଇଟି ନୂତନ ଇସ୍ପାତ୍ କାରଖାନା ପ୍ରତିଷ୍ଠା କରାଯିବାର ପରିକଳ୍ପନା ଚାଲିଛି । ଏହି ନୂତନ ଇସ୍ପାତ୍ କାରଖାନା ଦୁଇଟି ଗୋଆ, ବିଶାଖାପାଟଣା, ଓଡ଼ିଶାର ବଣାଇଗଡ଼ ଓ ଦଣ୍ଡକାରଣ୍ୟ ମଧ୍ୟରୁ କେଉଁଠାରେ ପ୍ରତିଷ୍ଠା କରାଯିବ, ତାହା ଠିକ ହୋଇନାହିଁ । ଆମର ଏଇ ଓଡ଼ିଶାର କେନ୍ଦୁଝର ଜିଲ୍ଲାର ବଡ଼ବିଲଠାରେ ଲୁହାପିଣ୍ଡ ଉତ୍ପାଦନ ପାଇଁ ଗୋଟିଏ ଲୋ-ସାଫ୍ଟ-ଚୂଲୀ ସ୍ଥାପିତ ହୋଇଛି ଏବଂ ଏଥିରୁ ଦୈନିକ ପ୍ରାୟ ୧୦୦ ଟନ୍ ଲୁହାପିଣ୍ଡ ଉତ୍ପାଦନ କରାଯାଉଛି । ଏଠାରେ ଆଉ ଗୋଟିଏ ଏହିପରି ଚୂଲୀ ବସାଇ ଉତ୍ପାଦନ ବୃଦ୍ଧି କରାଯିବାର ବ୍ୟବସ୍ଥା ହେଉଛି ଏବଂ ଏଥିନିମନ୍ତେ ବିଜୟନଗର-ରାୟପୁର ଶାଖା ଲାଇନଯାଏ ଉକ୍ତ ଖଣି ଅଞ୍ଚଳରୁ ୩୦୯ ମାଇଲର ରେଳରାସ୍ତା ପଡ଼ିବାର କାର୍ଯ୍ୟ ଆରମ୍ଭ ହୋଇଗଲାଣି । ଏହି ରେଳପଥ କୋରାପୁଟ ଜିଲ୍ଲା ଭିତର ଦେଇ ଆସିବ ।

"ବଇଲାଡ଼ଲା ଖଣିରୁ ଆଧୁନିକ ଯନ୍ତ୍ରପାତି ସାହାଯ୍ୟରେ ଖଣିଜ ଉତ୍ତୋଳନ ବାବଦରେ ଜାପାନ ସାହାଯ୍ୟ ଦେବ । ବିଶାଖାପାଟଣା ବନ୍ଦର ଦେଇ ଲୁହାପଥର ରପ୍ତାନି ହେବ । ସେହିପରି କେନ୍ଦୁଝର ଜିଲାର କିରିବୁରୁ ଖଣିରୁ ୧୯୬୪ ମସିହାରୁ ୧୦ ବର୍ଷଯାଏ ୨୦ ଲକ୍ଷ ଟନ କରି ଲୁହାପଥର ପଠାଯିବ । ବିମଳଗଡ଼-କିରିବୁରୁ ଭିତରେ ରେଲଲାଇନ ପଡ଼ିଗଲାଣି । ବିଶାଖାପାଟଣା ବନ୍ଦର ଦେଇ ଏହି ଖଣିରୁ ଲୁହାପଥର ପଠାଯିବ । ତା'ଛଡ଼ା ପାରଦ୍ୱୀପ ବନ୍ଦର ଦେଇ ମଧ୍ୟ ଲୁହାପଥର ରପ୍ତାନି ହେବ । ଏହା ହେବ ଓଡ଼ିଶାର ଏକ ପ୍ରଧାନ ବନ୍ଦର । ଓଡ଼ିଶା ସରକାର ପାରଦ୍ୱୀପ ବନ୍ଦର ତିଆରି କରିବା ପାଇଁ ଜୋରସୋର କାର୍ଯ୍ୟ ଆରମ୍ଭ କରିଛନ୍ତି । ପାରଦ୍ୱୀପ ବନ୍ଦରରୁ ୧୦୦ ମାଇଲ ଭିତରେ ଆମର ଏହି ଟମକା-ଦଇତାରି ଖଣି ଅଞ୍ଚଳ ଆସୁଛି । ରପ୍ତାନିଯୋଗ୍ୟ ୧୩୦ ନିୟୁତ ଟନ ଉତ୍କୃଷ୍ଟ ଲୁହାପଥର ଏ ଅଞ୍ଚଳରେ ଅଛି । ଏହାଛଡ଼ା କ୍ରୋମାଇଟ୍ ଖଣିଜ ମଧ୍ୟ ସୁକିନ୍ଦା ଅଞ୍ଚଳରେ ପ୍ରଚୁର ପରିମାଣରେ ଗଚ୍ଛିତ ରହିଛି । ତାଳଚେର-ବିଜୟକେଲା ରେଲପଥ ନିର୍ମାଣ ହୋଇଗଲେ ବଣାଇ-କେନ୍ଦୁଝର ଅଞ୍ଚଳର ଲୁହାପଥର ମଧ୍ୟ ପାରଦ୍ୱୀପ ଦେଇ ରପ୍ତାନି ହୋଇପାରିବ । ଖଣି ଅଞ୍ଚଳରୁ ବନ୍ଦର ପାଖକୁ ଲୁହାପଥର ବୋହିନେବା ପାଇଁ ୮୨ ମାଇଲ ଲମ୍ବର ଏକ୍ସପ୍ରେସ ରାସ୍ତା ତିଆରି ହେଉଅଛି । ୧୯୬୫ ମସିହା ଅକ୍ଟୋବର ମାସ ସୁଦ୍ଧା ଏହି ରାସ୍ତାରେ ଲୁହାପଥର ବୁହା କାମ ଆରମ୍ଭ ହୋଇଯିବ । ଏହାଛଡ଼ା ତାଳଚେରରେ ମଧ୍ୟ ଏକ ଶିଳ୍ପାଞ୍ଚଳକୁ ପରିଣତ କରାଯିବ ଏବଂ ଏଠାରେ ମଧ୍ୟ ଏହିପରି ଲୋ-ସାଫ୍ଟ୍ ଚୁଲି ସାହାଯ୍ୟରେ ନରମ ଲୁହାପିଣ୍ଡ ଉତ୍ପାଦନ କରାଯିବାର ଉଦ୍ୟମ ହେଉଛି ।

"ତେବେ ମୋଟାମୋଟି ବିଚାର କଲେ କହିବାକୁ ଗଲେ ଓଡ଼ିଶାରେ ଆଜି କେତୋଟି ଲୁହା କାରଖାନା ବସାଯିବାର ସୁବିଧା ରହିଛି । ବଣାଇଗଡ଼ ଏଥିପାଇଁ ଏକ ଅତି ସୁବିଧାଜନକ ସ୍ଥାନ । ଲୁହା କାରଖାନା ପାଇଁ ଦରକାର ହେଉଥିବା ଖଣିଜ ଓଡ଼ିଶାରେ ପ୍ରଚୁର ପରିମାଣରେ ରହିଛି । ଲୁହାକାରଖାନା ପାଇଁ ଲୁହାପଥର ଛଡ଼ା କୋଇଲା ଓ ଚୂନପଥର ମଧ୍ୟ ଆବଶ୍ୟକ ହୁଏ । ଏହି କୋଇଲା କୋକିଙ୍ଗ୍-

କୋଇଲା ଧରଣର ହୋଇଥିବା ଦରକାର । ରାଉରକେଲା ଲୁହାକାରଖାନା ପାଇଁ ବଣାଇ ଅଞ୍ଚଳର ଖରସୁଆଁ ଏବଂ ଖଣ୍ଡାଧାର ପାହାଡ଼ର ଖଣି ଅଞ୍ଚଳରୁ ଲୁହାପଥର ଅଣାଯାଉଛି, ବିହାରର ବୋକାରୋ, କାରଗାଲି ଓ ଝରିଆ କୋଇଲା ଖଣିରୁ କୋକିଂ-କୋଇଲା ଅଣାଯାଉଛି ଏବଂ ସୁନ୍ଦରଗଡ଼ ଜିଲ୍ଲାର ବୀରମିତ୍ରପୁର-ହାତିବାଡ଼ି ଅଞ୍ଚଳରୁ ଚୂନପଥର ଅଣାଯାଉଛି । ସେହିପରି ଭିଲାଇକୁ ସେଠାରୁ ୭୦ ମାଇଲ ଦୂରରେ ଥିବା ରାଜହରା ଖଣିରୁ ଲୁହାପଥର ଅଣାଯାଉଛି । ଝରିଆ-ବୋକାରୋରୁ କୋଇଲା ଆସୁଛି, କୋରବାରୁ ମଧ୍ୟ ଆସିବ ଏବଂ ୧୫ ମାଇଲ ଦୂରବର୍ତ୍ତୀ ନନ୍ଦିନୀ ଚୂନପଥର ଖଣିରୁ ଚୂନପଥର ଅଣାଯାଉଛି । ଦୁର୍ଗାପୁର କାରଖାନା ପାଇଁ ଓଡ଼ିଶାର ବଣାଇ ଅଞ୍ଚଳରୁ ଲୁହାପଥର, ବୋକାରୋ ଓ ଝରିଆ ଅଞ୍ଚଳରୁ କୋଇଲା ଏବଂ ବୀରମିତ୍ରପୁର-ହାତିବାଡ଼ି ଅଞ୍ଚଳରୁ ଚୂନପଥର ଯୋଗାଯାଉଛି । ତା’ ଛଡ଼ା ଟାଟା ଲୁହା-କାରଖାନା କଥା ତ ଆପଣମାନେ ଜାଣନ୍ତି । ଓଡ଼ିଶାରୁ ଲୁହାପଥର ଓ ଚୂନପଥର ଏହି କାରଖାନାକୁ ଯୋଗାଯାଉଥାଏ । ଏହିପରିଭାବରେ ଭାରତର ବଡ଼ ବଡ଼ ଲୁହା କାରଖାନା ପ୍ରଧାନ ଖଣିଜ ବସ୍ତୁ ଜାଗାରୁ ପାଉଛନ୍ତି ।

ଖାଲି କ’ଣ କୋଇଲା ଓ ଚୂନପଥର ? ଏ ତ ଗଲା ସର୍ବପ୍ରଧାନ ଖଣିଜ—ଏହାଛଡ଼ା କ୍ରୋମାଇଟ୍, ମ୍ୟାଗ୍‌ନେସାଇଟ୍, କାୟୁନାଇଟ୍ ପରି ଖଣିଜ ବି ଲୁହାକାରଖାନାରେ ଦରକାର ହୁଏ । ଏଗୁଡ଼ିକୁ ରିଫ୍ରାକ୍‌ଟରି ଖଣିଜ କୁହାଯାଏ । ଏହି ଖଣିଜକୁ ବ୍ୟବହାର କରି ଗଢ଼ାଯାଉଥିବା ଇଟା ଲୁହା ତରଳା ହେଉଥିବା ଚୁଲ୍ଲୀର କାନ୍ଥରେ ବ୍ୟବହୃତ ହୁଏ । ଏହି ଇଟା ଅତ୍ୟଧିକ ଉତ୍ତାପ ସହିପାରେ ଏବଂ ଏହାକୁ ଦେବାଦ୍ୱାରା ଲୁହାଚୁଲ୍ଲୀର କାନ୍ଥ ଆଉ ନଷ୍ଟ ହୁଏ ନାହିଁ । ତା’ ଛଡ଼ା ବିଭିନ୍ନ ଇସ୍ପାତ୍ ଏବଂ ଧାତୁର ସମ୍ମିଶ୍ରଣ ତିଆରି କରିବାରେ କ୍ରୋମାଇଟ୍, ମାଙ୍ଗାନିଜ ଓ ଭାନାଡ଼ିଅମ୍ ଖଣିଜ ଦରକାର ହୁଏ । କାୟୁନାଇଟ୍, ମ୍ୟାଗ୍‌ନେସାଇଟ୍‌କୁ ଛାଡ଼ି ଆଉ ସମସ୍ତ ଖଣିଜ ଓଡ଼ିଶାରେ ପର୍ଯ୍ୟାପ୍ତ ପରିମାଣରେ ରହିଛି । ବୈଦ୍ୟୁତିକ ଶକ୍ତିର ଅଭାବ ମଧ୍ୟ ଓଡ଼ିଶାରେ ରହିବ ନାହିଁ, ଶ୍ରମର ମଧ୍ୟ ଅଭାବ ନାହିଁ । ଏହିସବୁ ଦୃଷ୍ଟିରୁ ବିଚାର କଲେ ଓଡ଼ିଶାରେ ଆଉ କେତୋଟି ଲୁହା କାରଖାନା ସ୍ଥାପନ ପାଇଁ ବେଶ୍ ସୁବିଧା କ୍ଷେତ୍ର ରହିଛି ।

"ଆପଣମାନଙ୍କୁ ତ ଲୁହା ଓ ଇସ୍ପାତ୍ ଶିଳ୍ପ ଓ ଏଥିରେ ଆବଶ୍ୟକ ହେଉଥିବା ଖଣିଜ କଥା କହିଲି; ତେବେ ଆଉ ଗୋଟିଏ କଥା ପୁଣି ଦେଖିବାର କଥା । ଆମର ପ୍ରଚୁର ଲୌହ ଖଣିଜ-ସଂପଦ ଥିଲାବେଳେ ଆମକୁ ଆମ ନିଜ ଦେଶରେ ତାହା ବ୍ୟବହାର କରିବାପରେ ବାହାରକୁ ରପ୍ତାନି କରି ବୈଦେଶିକ ମୁଦ୍ରା ଅର୍ଜନ କରିବାକୁ ପଡ଼ିବ । ଆନନ୍ଦର କଥା, ଭାରତରୁ ଲୁହାପଥର ଆମଦାନୀ କରିବାପାଇଁ ୟୁରୋପର କେତେକ ରାଜ୍ୟ ଏବଂ ଜାପାନ୍ ବିଶେଷ ଆଗ୍ରହ ଦେଖାଇଛନ୍ତି । ୧୯୬୫ ମସିହା ଆରମ୍ଭରୁ ଜାପାନ୍ ଭାରତରୁ ୩୦ ଲକ୍ଷ ଟନ୍ ଲୁହାପଥର ନେବ ଏବଂ ପରେ ଏହାକୁ ବଢ଼ାଇ ୧ କୋଟି ଟନ୍ କରିବା ପାଇଁ ଯୋଗାଡ଼ ଚାଲିଛି । ୧୯୬୬ ମସିହାରୁ ୧୫ ବର୍ଷଯାଏ ବର୍ଷକୁ ୪୦ ଲକ୍ଷ ଟନ୍ କରି ଲୁହାପଥର ମଧ୍ୟପ୍ରଦେଶର ବଇଲାଡ଼ିଲା ଖଣି ଅଞ୍ଚଳରୁ ୨ ନିୟୁତ ଟନ୍‌ରୁ ୫ବା ୧୦।୧୫ ନିୟୁତ ଟନ୍ ଲୁହାପଥର ରପ୍ତାନି ହୋଇପାରିବ । ୧୯୬୫ ମସିହା ଅକ୍ଟୋବର ମାସରେ ପାରାଦ୍ୱୀପ ବନ୍ଦରରେ ୬୦,୦୦୦ ଟନ୍ ଧରିବାଭଳି ପ୍ରଥମ ଲୁହାପଥରବାହୀ ଜାହାଜ ବୋଝେଇ ହେବାର ଆଶା ଯୁକ୍ତିଯୁକ୍ତ ଦେଖାଗଲାଣି ବନ୍ଦର ଓ ତାର ପଛପଟ ତଳଅଞ୍ଚଳ ତଥା କେନ୍ଦୁଝରର ଗନ୍ଧମାର୍ଦ୍ଦନ, ନୟାଗଡ଼ ପ୍ରଭୃତି ଅଞ୍ଚଳରେ ଥିବା ଲୁହାପଥର ଖଣି ମଧ୍ୟରେ ରେଳ ସଂଯୋଗ ରଖିବା ଆବଶ୍ୟକ ପଡ଼ୁଛି । ଯଦି ଆମେ ଆମର କେବଳ ଲୁହାପଥର ପାରାଦ୍ୱୀପ ବନ୍ଦର ଦେଇ ରପ୍ତାନି କରିବା, ତେବେ ସେଥିରୁ ଆମେ ୧୦ କୋଟି ଟଙ୍କାର ବୈଦେଶିକ ମୁଦ୍ରା ଅର୍ଜନ କରିପାରିବା । ତେଣୁ ସେଦିନ ଆଉ ବେଶୀ ଦୂର ନାହିଁ, ଯେତେବେଳେ କି ଆପଣମାନଙ୍କର ଏହି ଖଣିଜସମ୍ପଦଭରା ଅଞ୍ଚଳ ଓଡ଼ିଶାର ଭାଗ୍ୟ ବଦଳାଇଦେବ; ଯାହା ଫଳରେ ଆପଣମାନଙ୍କର ଜୀବନଧାରଣର ମାନରେ ଯଥେଷ୍ଟ ଉନ୍ନତି ଘଟିବ ।"—ଓଡ଼ିଶାର ଲୁହାପଥର, ଏହାର ଗୁରୁତ୍ୱ ଓ ପାରାଦ୍ୱୀପ ବନ୍ଦର ସମ୍ବନ୍ଧରେ ଲୋକମାନଙ୍କୁ ଏକ ସ୍ପଷ୍ଟ ଧାରଣା ଦେଇ ଅଫିସର୍ ଏ କଥା କହିଲେ ।

ଓଡ଼ିଶାର ଏହି ଲୌହ ଖଣିଜ-ସମ୍ପଦ ଓ ଏହାର ପ୍ରାଧାନ୍ୟ କଥା ଶୁଣି ଲୋକମାନେ ଭବିଷ୍ୟତ ଓଡ଼ିଶାର ଭାଗ୍ୟ ବିଷୟରେ ଆଶାନ୍ୱିତ ହୋଇପଡ଼ିଲେ । ବାସ୍ତବିକ୍ ଓଡ଼ିଶାର ପାରାଦ୍ୱୀପ ବନ୍ଦର ହେଲେ କେବଳ ଓଡ଼ିଶାର ଯେ ଉନ୍ନତି ହେବ ତା ନୁହେଁ, ସମଗ୍ର ଭାରତର ଅର୍ଥନୀତିକୁ ଏହା

ସମୁଜ୍ଜ୍ୱଳ କରିବ । ବର୍ତ୍ତମାନ ତ ଓଡ଼ିଶା ଏହି ଲୌହ ଖଣିଜ ଉତ୍ପାଦନରେ ଭାରତରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଛି ।

ସେ ଯେଉଁ ଆଦିବାସୀମାନେ ଆଜିକାଲି ଟ୍ରକ୍ ଡ୍ରାଇଭର୍, ଜିପ୍ ଡ୍ରାଇଭର୍ ଓ ବାବୁଭାଇମାନଙ୍କଠାରୁ ଟମକା-ଦଇତାରି ଓ ପାରାଦୀପର ନାଁ ଶୁଣିଛନ୍ତି, ସେମାନେ ଆଜି ଅଫିସର୍‌ଙ୍କଠାରୁ ଏ ବିଷୟରେ ଏକ ପରିଷ୍କାର ଧାରଣା ପାଇପାରିଲେ; କଥାଟିକୁ ବେଶ୍ ଭଲରୂପେ ବୁଝିଗଲେ ।

"ହଁ, ବନ୍ଦର ନ କରି ଲୁହାପଥର ନ ପଠାଇଲେ ଆମେ ବିଦେଶୀ ଟଙ୍କା ପାଇବା କିମିତି ? ତା' ତ ନିଶ୍ଚୟ କରିବାକୁ ପଡ଼ିବ । ତା ଛଡ଼ା ଆମ ଦେଶରେ ବି ଲୁହାକାରଖାନା ଖୋଲି ଲୁହା ତିଆରି କରିବାକୁ ପଡ଼ିବ । ଏଇ ଲୁହାରେ କେତେ କାମ ନ ହେଉଛି । ମଟରଗାଡ଼ି, ଜାହାଜ, ସାଇକେଲ୍, ଲୁହାଖଟ୍ଟଦରି, କଡ଼ି, ଛଡ଼ି, କରେଇ, ବାଲ୍‌ଟି, କୋଡ଼ି, କୋଦାଳ, ଲଙ୍ଗଳଲୁହା ଏବଂ ତା' ଛଡ଼ା ବଡ଼ ବଡ଼ ମେସିନ୍‌ର ସବୁ ପାର୍ଟସ୍ ତ ଏଇ ଲୁହା ଓ ଇସ୍ପାତ୍‌ରେ ତିଆରି ହେଉଛି । ତେଣୁ ଲୁହା-କାରଖାନା ଅଧିକ ନ ବସାଇଲେ ଏସବୁ ହେବ କେଉଁଠି ?"—ସପନ କଥାଟିକୁ ବୁଝିଲା ପରି ଗମ୍ଭୀରଭାବରେ କହିଲା ।

ପାଣୁ ସପନର ଏ ପ୍ରକାର ବୁଝିଗଲା ପରି କଥାଟା ଶୁଣି ଟିକିଏ ବାହାଦୁରୀପଣ ଦେଖାଇ କହିଲା, "ଆରେ ! ଏଇନେ ସିନା ବନ୍ଦର ହେବ ଓ ବାହାର ଦେଶ ସହିତ ବାଣିଜ୍ୟ ହେବ ବୋଲି ସରକାର କହୁଛନ୍ତି; କିନ୍ତୁ ଦିନ ଥିଲା, ଯେତେବେଳେ ଏଇ କଳିଙ୍ଗ ଦେଶରୁ ବହୁଦୂର ଦରିଆପାରି ଦେଶକୁ ବି ତ ବୋଇତ ଯାଉଥିଲା; ଜିନିଷପତ୍ର ରପ୍ତାନି ହେଉଥିଲା । ଆମର ଏଇ ରାଜ୍ୟରେ ତ ପୁଣି ଅନେକ ବନ୍ଦର ଥିଲା । ଗଲ୍ଲା, ସେ ଯୁଗ ଯାଇଛି । ସେମିତି ତମେ କହୁଛ ଯେ ଆଧୁନିକ ପ୍ରଣାଳୀରେ ଲୁହା ଉତ୍ପାଦନ କରିବ ବୋଲି । ଆରେ ସପନ ! ସେଦିନ ପରା ମୁଁ ଗୁଞ୍ଜୁବାବୁଙ୍କଠାରୁ ଶୁଣିଛି...... ।"

"କୋଉ ଗଜୁବାବୁ ମ ?" ସପନ ବୁଝି ନ ପାରିଲାପରି ପଚାରିଲା ।

ପାଣୁ ସଙ୍ଗେ ସଙ୍ଗେ କହିଲା, "କରେ ଗଜୁବାବୁଙ୍କୁ ଜାଣିନାହୁଁ । ସାଆନ୍ତସାହିର ହରି ସାଆନ୍ତଙ୍କ ପୁଅ । ହେଇଟି, କ'ଣ କଲେଜରେ ସେ ପଢ଼ୁନାହାନ୍ତି ? ସେଇ କହୁଥିଲେ ଯେ ଦିଲ୍ଲୀରେ ଯେଉଁ କୁତବ୍‌ମିନାର





ଲୁହା ତେଳା ଚୁଲ୍ଲୀ





ଲୁହାପଥର ଉତ୍ତୋଳନ  ଲୁହା ଉତ୍ପାଦନ ଓ ଲୁହାର କେତେକ ସାଧାରଣ ବ୍ୟବହାର

ଖଣ୍ଡ ଅଛି, ତାର ପାଖରେ ଗୋଟିଏ କୋଉଠି ନଦା ଲୁହାର ଖଣ୍ଡ ଅଛି । ସେଥିରେ କେଉଁଠି ଜମା କଳଙ୍କି ଲାଗିନାହିଁ । ଆରେ, ତା ଛଡ଼ା ଆମେ ତ ଜାଣିଛୁ ଯେ ଆମ କୋଣାରକ ଦେଉଳରେ ପୁଣି ନଦା ଲୁହାଖଣ୍ଡର କଡ଼ ଥିଲା । ତା ଅର୍ଥ ସେତେବେଳେ ବି ଲୋକଙ୍କୁ ଲୁହା କାଢ଼ିବା ପ୍ରଣାଳୀ ଖୁବ୍ ଭଲଭାବରେ ଜଣାଥିଲା । ରାଜୁବାବୁଙ୍କଠାରୁ ମୁଁ ଶୁଣିଛି ଯେ ସୁନା, ପାରଦ, ତମ୍ବା, ଅଭ୍ର ପ୍ରଭୃତି ଖଣିଜ ଖୋଳିବା ଓ ଏହାର ବ୍ୟବହାର ମଧ୍ୟ ଆମର ଭାରତର ଲୋକମାନଙ୍କୁ ଜଣାଥିଲା ଏବଂ ଭାରତରେ ମୂଲ୍ୟବାନ୍ ହୀରା ମଧ୍ୟ ମିଳୁଥିଲା । ଭାରତରେ ଏଇ ଯେଉଁ ବହୁତ ମୂଲ୍ୟବାନ୍ ଖଣିଜ ରହିଛି, ତାର ଲୋଭରେ ବହୁତ ବିଦେଶୀ ଆକ୍ରମଣ ମଧ୍ୟ ଭାରତ ଉପରେ ହୋଇଛି । ଆମ ଜିନଷକୁ ତ ଲୁଟିକରି ନେଇଯାଉଛନ୍ତି; ତଥାପି ଆଜ ମଧ୍ୟ ଯାହା ଅଛି, ତାକୁ ଆମେ ଉପଯୁକ୍ତଭାବରେ ବ୍ୟବହାର କରିପାରିଲେ କେତେ କଥା ହେବ । ଦେଖିବା କଥା ଖାଲି ବାକି ରହିଲା ରେ ସପନ ! ଏଇ ପାରାଦ୍ୱୀପ ହେଉ ବା ଅନ୍ୟ ଲୁହାକାରଖାନା ହେଉ, ଆମ ଭାଗ୍ୟ କେମିତି ବଦଳିବ—ତାହାହିଁ ଦେଖିବା କଥା ।”

ପାଣୁ କଥା ଉପରେ ବିଶ୍ୱାସ କରି ସପନ କହିଲା, “କ’ଣ କହୁଛ ପାଣୁଭାଇ ! ଭାଗ୍ୟ ଆଉ ବଦଳନ୍ତା ନାହିଁ କି ? ଯେତେବେଳେ ଆମର ଏଠି ଯେଉଁ ବିପୁଳ ଖଣିଜ-ସଂପଦ ରହିଛି, ଯାହା ଉପରେ କି ସବୁ ଯନ୍ତ୍ରପାତି ତିଆରି, ଶିଳ୍ପ-କଳକାରଖାନା ଇତ୍ୟାଦି ନିର୍ଭର କରୁଛି, ତାକୁ ଯେତେ-ବେଳେ ପାଠୁଆ ବାବୁମାନେ ପ୍ରକୃତ ରୂପ ଅନୁସନ୍ଧାନ କରି ଭୂଇଁରୁ କାଢ଼ିବେ, ସେତେବେଳେ ଏ ଦେଶ ସୁନା ହୋଇଯିବ ପରା !”

“ଆରେ, ପାଠୁଆ ବାବୁ ଖାଲି କ’ଣ ଅନୁସନ୍ଧାନ କରିବେ ? ଆଜ ଏଇ ଅଫିସର୍ ବାବୁ ଯେଉଁ କଥା କହିଲେ, ଯେଉଁ ଉପାୟସବୁ ବତାଇ-ଦେଲେ, ତା ସାହାଯ୍ୟରେ ଆମେ ବି ତ ଏଣିକି ଖଣିଜ ଖୋଜିବାରେ ଚେଷ୍ଟା କରିବା । ଆରେ, ଘରେ ହାତ ଲଗାଇବା—ଦେଖିବା କ’ଣ ହେଉଛି । ମା’ପେଟରୁ ପଢ଼ି କ’ଣ ସବୁକଥା ଲୋକ ଶିଖିଥାଆନ୍ତି କି ? ଚେଷ୍ଟାଦ୍ୱାରା ସବୁ ହୁଏ ନା । ଆମର ମୂଳଆମୁଣ୍ଡକୁ ଯେତିକି ଆସିବ, ସେତିକି କରିବା । କିଏ ଜାଣେ ? ଆମେ ବି ହୁଏତ ଖୁବ୍ ମୂଲ୍ୟବାନ୍ ଖଣିଜ ସମ୍ବନ୍ଧରେ ଖବର ଦେଇପାରିବା ।” ପାଣୁର କଥାରେ ଫୁଟିଉଠୁଥିଲା ଏକ ଗଭୀର ଆତ୍ମପ୍ରତ୍ୟୟ ଭାବ ।

"ହଁ, ସେତିକବେଳକୁ ତ ହାଣ୍ଡି ତୁମ ମୁଣ୍ଡରେ ସୁନା କଳସ ଅଜାଡ଼ିବ ! ଭାରତ ସରକାର ମୂଲ୍ୟବାନ ଖଣିଜ ଖୋଜ ଖବର ଦେଲେ ଯେଉଁ ପୁରସ୍କାର ଦେବାର ଘୋଷଣା କରନ୍ତି, ତାକୁ ତ ତମେ ପାଇବ ।" ସପନ ଟିକିଏ ଥଟ୍ଟାଳିଆ ସ୍ୱରରେ କହିଲା ।

ପାଣ୍ଡୁ—"ତୋ'ର ତ ସବୁ କଥାକୁ ଗୋଟାଏ ଥଟ୍ଟା ସପନ !"

ସପନ—"ନାହିଁ ! ଥଟ୍ଟା ନୁହେଁ ଯେ ପ୍ରକୃତ କଥାଟି ହେଉଛି ସେଇଆ । ଆଚ୍ଛା, ବାବୁ ଆଉ କ'ଣ ପଥର ଉଠି ପୁଣି କ'ଣ କହିଲେଣି ଶୁଣ ।"

ଏଉତରେ ଅଫିସର୍ ଆଉ ଗୋଟିଏ ବାକ୍ସରୁ କ୍ରୋମାଇଟ୍ ଖଣିଜ ଓ ମାଙ୍ଗାନିଜ୍ ଖଣିଜ, ବକ୍ସାଇଟ୍, ଚିନାମାଟି, ଅଗ୍ନିମାଟି, ଚୂନ ପଥର, ଡୋଲୋମାଇଟ୍, ଗ୍ରାଫାଇଟ, ପଥରକୋଇଲାର ବଡ଼ ବଡ଼ ନମୁନା ବାହାରେ କାଢ଼ି ରଖୁଥାନ୍ତି । ଅଫିସର୍ ଭାରତ ଏବଂ ଓଡ଼ିଶାର ପ୍ରଧାନ ଅଞ୍ଚଳର କେତୋଟି କ୍ରୋମାଇଟ୍ ଖଣିଜ ଟେବୁଲ୍ ଉପରେ ରଖି ପୁଣି ଆରମ୍ଭ କଲେ, "ଆପଣମାନଙ୍କୁ ଲୁହାପଥର ବିଷୟରେ କହିଲି; ଏଥର କ୍ରୋମାଇଟ୍ ବିଷୟରେ କହିବି । କ୍ରୋମାଇଟ୍ ନାଁଟା ଆପଣମାନେ ନିଶ୍ଚୟ ଶୁଣିଥିବେ । କାରଣ ଆପଣଙ୍କର ଏଇ ନିକଟବର୍ତ୍ତୀ ଅଞ୍ଚଳରେ ତ ଖଣିଜ ଖୋଳାଯାଉଛି । ଅନେକେ ବି ସେ ଖାଦାନରେ କାମ କରୁଥିବେ । ଯେଉଁଠି ଖାଲି ଉପରଟା ମାଙ୍କଡ଼ାପଥର ଥିଲା ବା ଶାଳ ଜଙ୍ଗଲରେ ପୂର୍ଣ୍ଣ ଥିଲା, ତା'ର ତଳୁ ଆପଣମାନେ ଦେଖୁଛନ୍ତି କେତେ କ୍ରୋମାଇଟ୍ ଖଣିଜ ବାହାରୁଛି । ଏହି ଖଣିଜ ଅତି ମୂଲ୍ୟବାନ୍ ଖଣିଜ । ଏହା ବହୁତ ରକମର ରହିଛି । ଆଗରୁ କହିଛି ଯେ, ଲୁହାଚାଲା କାରୁରେ ଯେଉଁ ଅତି ଉଚ ଉତ୍ତାପ ସହ୍ୟ କଲାପରି ଉଫ୍ରାକ୍ଟରି ଇଟା ବ୍ୟବହାର କରାଯାଏ, ତାକୁ ତିଆରି କରିବା ପାଇଁ ଏହି କ୍ରୋମାଇଟ୍ ଖଣିଜ ଆବଶ୍ୟକ ହୁଏ । ଏହାଛଡ଼ା ଇସ୍ପାତକୁ ଶକ୍ତ କରିବା ଏବଂ ଯେଉଁ ଚକ୍‌ଚକିଆ ଷ୍ଟେନ୍‌ଲେସ ବାସନ ବ୍ୟବହାର କରାଯାଉଛି, ତାକୁ ତିଆରି କରିବାରେ ମଧ୍ୟ ଏହା ବ୍ୟବହୃତ ହୁଏ । ତା'ଛଡ଼ା ଚମଡ଼ା କାରଖାନା, ରଙ୍ଗ କାରଖାନା ଏବଂ ବିଭିନ୍ନ ରସାୟନିକ ଶିଳ୍ପ ପ୍ରତିଷ୍ଠାନରେ ମଧ୍ୟ ଏହାକୁ ବ୍ୟବହାର କରାଯାଇ ବହୁ ଜିନିଷ ତିଆରି ହୁଏ ।

କ୍ରୋମାଇଟ୍‌ରୁ ମଧ୍ୟ ଫେରୋକ୍ରୋମ୍ ନାମକ ଏକପ୍ରକାର ଧାତୁ ତିଆରି କରାଯାଏ । ଆମର ଓଡ଼ିଶାର ଯାଜପୁରରୋଡ଼ଠାରେ ଗୋଟିଏ ଫେରୋକ୍ରୋମ୍ କାରଖାନା ବସାଇବେ ବୋଲି ସରକାର ସ୍ଥିର କରୁଛନ୍ତି । ସୁକନ୍ଦା ଅଞ୍ଚଳର କାଳରଙ୍ଗି କ୍ରୋମାଇଟ୍ ଖଣିରୁ କ୍ରୋମାଇଟ୍ ଏଠାକୁ ଯୋଗାଇ ଦିଆଯିବ । ଓଡ଼ିଶା ମାଇନିଂ କର୍ପୋରେସନ ଏଥିପାଇଁ ଚେଷ୍ଟା କରୁଛନ୍ତି । ତେବେ କଥା ହେଉଛି—ଏ କ୍ରୋମାଇଟ୍ ଖଣିଜ କେଉଁ କେଉଁ ଅଞ୍ଚଳରେ ମିଳେ । ଓଡ଼ିଶା କଥା କହିବା ଆଗରୁ ଭାରତ କଥା ମୁଁ ଆଗ କହିବି । ଭାରତରେ ମହୀଶୂରର ହାସାନ୍ ଜିଲ୍ଲା, ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲା, ବିହାରର ସିଂହଭୂମ୍ ଜିଲ୍ଲାର ଗୁଇଁବସା ଅଞ୍ଚଳରେ କ୍ରୋମାଇଟ୍ ଖଣିଜ ମିଳେ । ଏହାଛଡ଼ା ଆନ୍ଧ୍ରପ୍ରଦେଶ ଏବଂ ମାନ୍ଦ୍ରାଜରେ ମଧ୍ୟ କେତେକ ଅଞ୍ଚଳରେ ଏହି ଖଣିଜ ଖୋଳାଯାଉଛି ।



( ସରୁଆବିଲ କ୍ରୋମାଇଟ୍ ଖଣିର ଦୃଶ୍ୟ )

"ବର୍ତ୍ତମାନ ଓଡ଼ିଶା କଥା ଦେଖିବା । ଆପଣଙ୍କର ଏଇ ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗର ଅଞ୍ଚଳ, କଟକ ଜିଲ୍ଲାର ସୁକନ୍ଦା ଅଞ୍ଚଳର ସରୁଆବିଲ୍, ଭୁମଟାଙ୍ଗର୍, କାଳରଙ୍ଗି ଏବଂ କେଉଁଝର ଜିଲ୍ଲାର ନୂଆସାହି ନଳଟବର୍ତ୍ତୀ ବଉଳା ପାହାଡ଼ ଅଞ୍ଚଳରେ ପ୍ରଚୁର କ୍ରୋମାଇଟ୍ ଖଣିଜ ମହଜୁଦ ରହିଛି । ଲୁହାପଥରପରି କ୍ରୋମାଇଟ୍ ଖଣିଜ ଉତ୍ପାଦନ



( ଶ୍ରୀମନ୍ତାଙ୍ଗରର କ୍ରୋମାଇଟ୍ ଖଣିଜ )



( ସୁକିନ୍ଦା ଅଞ୍ଚଳରେ କ୍ରୋମାଇଟ୍ ଖଣିରେ କାର୍ଯ୍ୟରତ କର୍ମଠ ଆଦିବାସୀ )

କରିବାରେ ଓଡ଼ିଶା ବର୍ତ୍ତମାନ ଭାରତରେ ପ୍ରଥମ ସ୍ଥାନ ଅଧିକାର କରିଛି । ଓଡ଼ିଶା ମାଇନିଂ କର୍ପୋରେସନ୍ ବର୍ତ୍ତମାନ କଟକ ଓ ଢେଙ୍କାନାଳ ଜିଲ୍ଲାର କ୍ରୋମାଇଟ୍ ଖଣିଜ ମିଳୁଥିବା ବିସ୍ତୃତ ଅଞ୍ଚଳ ପଟ୍ଟା ନେଇଛନ୍ତି ଓ ସେଥିନିମନ୍ତେ ଅନୁସନ୍ଧାନ ଚଳାଇଛନ୍ତି । ଏହାଛଡ଼ା ଭାରତ ସରକାରଙ୍କ

ଭୂତତ୍ତ୍ୱ ସର୍ଭେ ବିଭାଗ ମଧ୍ୟ ଆଧୁନିକ ଧରଣର ଯନ୍ତ୍ରପାତି ସାହାଯ୍ୟରେ ଏହି ଅଞ୍ଚଳରେ କ୍ରୋମାଇଟ୍ ଅନୁସନ୍ଧାନ କରିବାରେ ଲାଗିଛନ୍ତି ।

"କ୍ରୋମାଇଟ୍ ଯେଉଁ ଶିଳା ସହିତ ମିଳେ, ସେ ଶିଳା ଅନେକ ସମୟରେ ରୂପାନ୍ତରିତ ହୋଇ ବହୁ ମୂଲ୍ୟବାନ ଖଣିଜ ସୃଷ୍ଟି କରିଥାଏ । ଟାଲ୍କ ଓ ଆଜ୍‌ବେଷ୍ଟସ୍ ଏଥିମଧ୍ୟରେ ପ୍ରଧାନ ।

"ବିହାରର ଧଲଭୂମ ସବ୍‌ଡିଭିଜନର କେତେକ ସ୍ଥାନ, ଯୁଇଁବସା ନିକଟସ୍ଥ ହାଟ୍‌ଗମ୍ହାରିଆ, ଆନ୍ଧ୍ରପ୍ରଦେଶର କଡ଼ାପ୍‌ପା ଜିଲ୍ଲାର କେତେକ ଅଞ୍ଚଳ ଏବଂ ମହୀଶୂରରୁ ମଧ୍ୟ ଆଜ୍‌ବେଷ୍ଟସ୍ ମିଳେ । ତେବେ ଆନ୍ଧ୍ରପ୍ରଦେଶର କଡ଼ାପ୍ପା ଜିଲ୍ଲା ହେଉଛି ସର୍ବପ୍ରଧାନ ଅଞ୍ଚଳ । ଓଡ଼ିଶାରେ ଆଜ୍‌ବେଷ୍ଟସ୍ ମିଳେ ନାହିଁ । ଭାରତ ପ୍ରତ୍ୟେକ ବର୍ଷ ବିଦେଶରୁ ଆଜ୍‌ବେଷ୍ଟସ୍ ଆମଦାନୀ କରିଥାଏ । ଦକ୍ଷିଣ-ରୋଡ଼େସିଆ, ସ୍ୱିଜରଲଣ୍ଡରୁ ପ୍ରଧାନତଃ ଆମେ ଆଜ୍‌ବେଷ୍ଟସ୍ ଆମଦାନୀ କରିଥାଉ ।

"କ୍ରୋମାଇଟ୍‌ପରି ମାଙ୍ଗାନିଜ ଧାତୁ ମଧ୍ୟ ଆଜି ଏକ ମୂଲ୍ୟବାନ ଖଣିଜ । ଏହି ଖଣିଜ ସମ୍ବନ୍ଧରେ କିଛି କହିବା ନିତାନ୍ତ ଆବଶ୍ୟକ । କାରଣ ଆମର ଓଡ଼ିଶା ଏହି ଖଣିଜରେ ବିଶେଷ ସମୃଦ୍ଧ ଏବଂ ଭାରତରେ ଓଡ଼ିଶାରୁ ବର୍ତ୍ତମାନ ସର୍ବାଧିକ ପରିମାଣର ମାଙ୍ଗାନିଜ ଖଣିଜ ଉତ୍ତୋଳନ କରାଯାଉଛି । ଏକ ଜାତୀୟ ଇସ୍ପାତ୍ ତିଆରି କରିବାରେ ମାଙ୍ଗାନିଜ୍ ଖଣିଜ ବ୍ୟବହାର କରାଯାଏ । ବିଭିନ୍ନ ରାସାୟନିକ ଦ୍ରବ୍ୟ ତିଆରି କରିବା, ବ୍ୟାଟେରୀ ତିଆରି କରିବା, ରଙ୍ଗ ଓ ବାର୍ଣ୍ଣିସ୍ ପ୍ରସ୍ତୁତ କରିବାରେ ଏହା ବ୍ୟବହାର କରାଯାଏ । ବର୍ତ୍ତମାନ ଆମର ଭାରତବର୍ଷ ମାଙ୍ଗାନିଜ୍ ଖଣିଜ ଉତ୍ପାଦନରେ ପୃଥିବୀରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ପ୍ରଥମ ହେଉଛି ରୁଷିଆ । ମଧ୍ୟପ୍ରଦେଶର ଛିନ୍ଦୱାରା, ଭଣ୍ଡାରା, ବାଲାଘାଟ ଅଞ୍ଚଳ; ମହାରାଷ୍ଟ୍ରର ନାଗପୁର, ସିଭରାଜପୁର ଏବଂ ଆନ୍ଧ୍ରପ୍ରଦେଶର, ବିଶାଖାପାଟଣା ଜିଲ୍ଲା ଓ ମହୀଶୂରର ସାନ୍ଦୁର୍ ଅଞ୍ଚଳରେ ମାଙ୍ଗାନିଜ୍ ଖଣିଜ ପୂରିରହିଛି । ଓଡ଼ିଶାର କେନ୍ଦୁଝର ଜିଲ୍ଲାର ଜୋଡ଼ା, ବଡ଼ବିଲ୍; ସୁନ୍ଦରଗଡ଼ ଜିଲ୍ଲାର କଇରା; କୋରାପୁଟ, ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାରେ ଉତ୍କୃଷ୍ଟ ଧରଣର ମାଙ୍ଗାନିଜ୍ ଖଣିଜ ମିଳେ । କେନ୍ଦୁଝର ଜିଲ୍ଲାରୁ ସବୁଠାରୁ ବେଶୀ ମାଙ୍ଗାନିଜ୍ ଖଣିଜ ଉତ୍ପାଦିତ ହେଉଛି ।

"ଓଡ଼ିଶାର ମାଙ୍ଗାନିଜ୍ ଖଣିଜ ବିଦେଶରେ ମଧ୍ୟ ଆଦୃତ ହେଉଛି । ଭାରତରେ ପ୍ରାୟ ୧୨୫ ନିୟୁତ ଟନ୍ ମାଙ୍ଗାନିଜ ଖଣିଜ ଥିବାର ଅନୁସନ୍ଧାନରୁ ଜଣାଯାଇଛି ଏବଂ ସେଥିମଧ୍ୟରୁ ଓଡ଼ିଶାରେ କେବଳ ପ୍ରାୟ ୨୦ ନିୟୁତ ଟନ୍ ଅଛି । ପ୍ରତ୍ୟେକ ବର୍ଷ ହାରାହାରି ଏକ ନିୟୁତ ଟନ୍ ମାଙ୍ଗାନିଜ ଖଣିଜ ଭାରତ ବିଦେଶକୁ ରପ୍ତାନି କରୁଛି ଏବଂ ଏଥିରୁ ମୁଖ୍ୟ ଅଂଶ ଓଡ଼ିଶାରୁ ଯାଉଛି । ମାଙ୍ଗାନିଜ୍ ଖଣିଜ ଖଣିରୁ କାଢାହୁଥିବା ଅବସ୍ଥାରେ ବିଦେଶକୁ ନ ପଠାଇ ଫେରୋ-ମାଙ୍ଗାନିଜ ଧାତୁ ଆକାରରେ ପଠାଇବାର ଯୋଜନା କରାଯାଉଛି ।



( ବଡ଼ବିଲ ଅଞ୍ଚଳର ଧାତୁପଥର ଖଣି )

ଟାଟା କମ୍ପାନୀ ତରଫରୁ କେନ୍ଦୁଝର ଜିଲାର ଜୋଡ଼ାଠାରେ ଗୋଟିଏ ଫେରୋ-ମାଙ୍ଗାନିଜ କାରଖାନା ବସାଯାଇଛି । କୋରାପୁଟ ଜିଲାର ରାୟଗଡ଼ାଠାରେ ମଧ୍ୟ ଏହିପରି ଗୋଟିଏ କାରଖାନା ଅଛି । ଏହାଛଡ଼ା କଳାହାଣ୍ଡି ଜିଲାର କାଶୀପୁରଠାରେ ଆଉ ଗୋଟିଏ ଫେରୋ-ମାଙ୍ଗାନିଜ କାରଖାନା ବସିବାର ପ୍ରସ୍ତାବ ରହିଛି ।

କ୍ରୋମାଇଟ୍ ଯେପରି ରିଫ୍ରାକ୍ଟରୀ ଖଣିଜ, ସେହିପରି ଆଉ କେତେକ ଖଣିଜ ଅଛି; ସେଗୁଡ଼ିକୁ ବି ରିଫ୍ରାକ୍ଟରୀ ଖଣିଜ କୁହାଯାଏ । କାୟାନାଇଟ୍, ସିଲିମାନାଇଟ୍, ମ୍ୟାଗ୍‌ନେସାଇଟ୍ ଓ ଗ୍ରାଫାଇଟ୍, ନିଆଁମାଟି ପ୍ରଭୃତି ଏହି ଜାତୀୟ ଖଣିଜ୍ । ଗ୍ରାଫାଇଟ୍ ଓ ନିଆଁମାଟି ଛଡ଼ା ଆଉ ଅନ୍ୟ

କୌଣସି ଖଣିଜ ଓଡ଼ିଶାରେ ନାହିଁ କହିଲେ ଚଳେ; କିନ୍ତୁ ଭାରତର ଅନ୍ୟାନ୍ୟ ସ୍ଥାନମାନଙ୍କରେ ଏ ଖଣିଜ ଯଥେଷ୍ଟ ପରିମାଣରେ ରହିଛି । ବିହାରର ବିଜଖଇସୁଆଁ ରେଲଷ୍ଟେସନରୁ ପ୍ରାୟ ଦଶ ମାଇଲ ଦୂରରେ ଲିହ୍‌ସାବୁରୁଠାରେ ଯେଉଁ କାୟାନାଇଟ୍ ଖଣିଜ ଗଚ୍ଛିତ ରହିଛି, ତାହା ପୃଥିବୀର ଅନ୍ୟ କେଉଁଠାରେ ଦେଖିବାକୁ ମିଳେ ନାହିଁ । ଆସାମର ଖାସି ପାର୍ବତ୍ୟ ଅଞ୍ଚଳ, ମଧ୍ୟପ୍ରଦେଶ ଓ ମହୀଶୂରରେ ସିଲିମାନାଇଟ୍ ମିଳେ । ଲିପ୍‌ସାବୁରୁର କାୟାନାଇଟ୍ ଆମେ ବର୍ତ୍ତମାନ ବିଦେଶକୁ ରପ୍ତାନି କରୁଛୁ । ଓଡ଼ିଶାର ଢେଙ୍କାନାଳ, କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ କାୟାନାଇଟ୍ ଥିବାର ଖବର ମିଳିଛି । ଏ ସମ୍ବନ୍ଧରେ ବିଶେଷ ଅନୁସନ୍ଧାନ ହୋଇନାହିଁ ।



( ଲିପ୍‌ସାବୁରୁର କାୟାନାଇଟ୍ ଖଣିଜ )

"ମାନ୍ଦ୍ରାଜର ସାଲେମ୍ ଜିଲ୍ଲାରେ ମ୍ୟାଗ୍‌ନେସାଇଟ୍ ଖଣିଜ ମିଳେ । ଏହା ମ୍ୟାଗ୍‌ନେସିଅମ୍ ଧାତୁର ବିଭିନ୍ନ ଲଘୁ ଧାତବ ମିଶ୍ରଣ; ଏକଜାତୀୟ ସିମେଣ୍ଟ, କାଗଜ ଓ ଚିନିକଳରେ ବ୍ୟବହୃତ ହୋଇଥାଏ । ତା'ଛଡ଼ା ଚ ରିଫ୍ରାକ୍ଟରୀ ଇଟା ତିଆରି କରିବାରେ ଏହା ବ୍ୟବହୃତ ହୋଇଥାଏ । ସାଲେମ୍ ଛଡ଼ା ତ୍ରିଚିନାପଲ୍ଲୀ, ମହୀଶୂରର ହାସାନ ଜିଲ୍ଲା ପ୍ରଭୃତି ଅଞ୍ଚଳରେ ମଧ୍ୟ ଏହି ଖଣିଜ ମିଳୁଛି । କେନ୍ଦୁଝର ଜିଲ୍ଲାର ନୂଆସାହି ଜୋମାଇଟ୍ ଖଣି ଅଞ୍ଚଳରେ ମ୍ୟାଗ୍‌ନେସାଇଟ୍ ବହୁତ ଅଳ୍ପ ପରିମାଣରେ ମିଳେ । ଏସବୁ

ଖଣିଜରେ ଓଡ଼ିଶା ସମୃଦ୍ଧ ନହେଲେହେଁ, ଗ୍ରାଫାଇଟ୍ ଖଣିଜ ଆମ ରାଜ୍ୟରେ ପ୍ରଚୁର ପରିମାଣରେ ରହିଛି ।

"ଗ୍ରାଫାଇଟ୍ ଖଣିଜ ତ ଆପଣମାନଙ୍କୁ ଦେଖାଇଛି । କାଗଜ ଉପରେ ଏହାକୁ ଘଷିଦେଲେ ପେନ୍‌ସିଲ୍‌ପରି କଳାଗାର କାଗଜ ଉପରେ ଟାଣି ହୋଇଯାଏ । ପେନ୍‌ସିଲର ସୀସା ତିଆରି କରିବାରେ ଏବଂ ଏକଜାତୀୟ ଶ୍ରେଷ୍ଠ ଧାତୁ ତରଳାଇବା ପାତ୍ର ବା କ୍ରୁସିବଲ୍ ତିଆରି କରିବାରେ ଏହା ବ୍ୟବହୃତ କରାଯାଏ । ଏହାଛଡ଼ା ଆଣବିକଶକ୍ତି ଉତ୍ପାଦନ କେନ୍ଦ୍ରରେ ମଧ୍ୟ ଏହାକୁ ବ୍ୟବହାର କରାଯାଏ । ତା'ଛଡ଼ା ବିଭିନ୍ନ ପ୍ରକାରର ଗ୍ରୀଜ୍ ଓ ଘର୍ଷଣହ୍ରାସକ ଦ୍ରବ୍ୟ ଏହାକୁ ବ୍ୟବହାର କରି ତିଆରି କରାଯାଏ । ଆନ୍ଧ୍ରପ୍ରଦେଶର ପୂର୍ବ-ଗୋଦାବରୀ ଜିଲା, ବିଶାଖାପାଟଣା, କୃଷ୍ଣାଜିଲା; ମଧ୍ୟପ୍ରଦେଶର ବେତୁଲ୍ ଜିଲା; ବିହାରର ଭାଗଲପୁର ଜିଲା; ମହୀଶୂରର କୋଲାର ଏବଂ ହାସାନ୍ ଜିଲାର ବିଭିନ୍ନ ଅଞ୍ଚଳରେ ଗ୍ରାଫାଇଟ୍ ମିଳିଥାଏ । ଓଡ଼ିଶାର କଳାହାଣ୍ଡି, ଢେଙ୍କାନାଳ, ବଲାଙ୍ଗୀର ଓ ସମ୍ବଲପୁର ଜିଲାରେ ପ୍ରଚୁର ଗ୍ରାଫାଇଟ୍ ରହିଛି । ଓଡ଼ିଶାରେ ଏ ଖଣିଜର ବିକାଶ ନିମିତ୍ତ ଆଦୌ ଦୃଷ୍ଟି ଦିଆଯାଇନାହିଁ । ଏହି ଖଣିଜର ଅନୁସନ୍ଧାନ ଦିଗରେ ଓ ଉତ୍ପାଦନ ବୃଦ୍ଧି ଦିଗରେ ବିଶେଷ ବ୍ୟବସ୍ଥା ଅବଲମ୍ବନ କରାଯାଉଛି । ଟିଟିଲାଗଡ଼ଠାରେ ଗୋଟିଏ ଗ୍ରାଫାଇଟ୍ କ୍ରୁସିବଲ୍ କାରଖାନା ପ୍ରତିଷ୍ଠିତ ହୋଇଛି ।

"ନିଆଁମାଟି ମଧ୍ୟ ଓଡ଼ିଶାରେ ଭରିରହିଛି । ଭାରତରେ ବିହାରର ଝରିଆ ଓ ପଶ୍ଚିମବଙ୍ଗଳାର ରାଣୀଗଞ୍ଜ କୋଇଲାଖଣି ଅଞ୍ଚଳରେ ଉତ୍କୃଷ୍ଟ ଧରଣର ନିଆଁମାଟି ମିଳେ । ଓଡ଼ିଶାର ସମ୍ବଲପୁର ଜିଲାର ବେଲପାହାଡ଼ ଅଞ୍ଚଳରେ ମଧ୍ୟ ଉତ୍କୃଷ୍ଟ ଧରଣର ନିଆଁମାଟି ମିଳେ । ଏହାକୁ ବ୍ୟବହାର କରି ବେଲପାହାଡ଼ଠାରେ ଗୋଟିଏ ରିଫ୍ରାକ୍ଟରୀ କାରଖାନା ପ୍ରତିଷ୍ଠିତ ହୋଇଛି । ଏହାଛଡ଼ା ଓଡ଼ିଶା ସିମେଣ୍ଟ କମ୍ପାନୀ ରାଜଗାଙ୍ଗପୁରଠାରେ ଓ ଓଡ଼ିଶା ଇଣ୍ଡଷ୍ଟ୍ରିଜ ବାରଙ୍ଗଠାରେ ରିଫ୍ରାକ୍ଟରୀ କାରଖାନା ଖୋଲିଛନ୍ତି । ସମ୍ବଲପୁର ଜିଲାର ରାମପୁରଠାରେ ମଧ୍ୟ ଏହିପରି ଆଉ ଗୋଟିଏ କାରଖାନା ଖୋଲାଯାଉଛି । ଲାପଙ୍ଗଠାରେ ମଧ୍ୟ ଏକ କାରଖାନା ଖୋଲିବାର ପ୍ରସ୍ତାବ ଅଛି । ଓଡ଼ିଶାରେ ରିଫ୍ରାକ୍ଟରୀ ଶିଳ୍ପର ବିକାଶ ଦିଗରେ ଯଥେଷ୍ଟ ସୁବିଧା ରହିଛି । ଆପଣମାନଙ୍କୁ ଏଇ ନିଆଁମାଟି ବିଷୟ

କହୁଥିଲାବେଳକୁ ଆଉ ଗୋଟିଏ କଥା ମନେ ପଡ଼ିଯାଉଛି । ଆପଣମାନଙ୍କ ମଧ୍ୟରୁ ଅନେକେ ଚିନାମାଟି ବାସନକୁସନ ଦେଖିଥିବେ ।

"ଏ ଯେଉଁ ଚିନାମାଟି ବାସନକୁସନ—କପ୍, ପ୍ଲେଟ୍, ଥାଳିଆ ପ୍ରଭୃତି ତିଆରି ହେଉଛି, ସେଗୁଡ଼ିକ ମଧ୍ୟ ବିଭିନ୍ନ ଖଣିଜରୁ ତିଆରି ହେଉଛି । ଚିନାମାଟି, ସ୍ଫଟିକ ଓ ଫେଲ୍‌ସ୍ପାର ଖଣିଜ ଏଥିରେ ପ୍ରଧାନତଃ ବ୍ୟବହୃତ ହୁଏ । ଭାରତର ଅନେକ ସ୍ଥାନରେ ଏହି ଚିନାମାଟି ମିଳେ । ତେବେ ଓଡ଼ିଶାରେ ଚିନାମାଟି କେଉଁ କେଉଁ ଜାଗାରେ ମିଳେ, ସେଗୁଡ଼ିକ ଆମର ଦେଖିବାର କଥା । ମୟୂରଭଞ୍ଜ ଜିଲ୍ଲାର ଯଶିପୁର ଏବଂ କରଞ୍ଜିଆ; ପୁରୀ ଜିଲ୍ଲାର ଚନ୍ଦକା ଏବଂ କଟକ ଜିଲ୍ଲାର ନରାଜ ପ୍ରଭୃତି କେତେକ ଅଞ୍ଚଳରେ ଚିନାମାଟି ମିଳେ । ସମ୍ବଲପୁର, କୋରାପୁଟ, ଗଞ୍ଜାମ, କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାରେ ଅପର୍ଯ୍ୟାପ୍ତ ପରିମାଣରେ ସ୍ଫଟିକ ଓ ଫେଲ୍‌ସ୍ପାର ମିଳିବାର ଦେଖାଯାଏ । ବଙ୍ଗଳା ଓ ବିହାରର କେତେକ ଚିନାମାଟି ବାସନ ତିଆରି କାରଖାନାକୁ ଏହି ଅଞ୍ଚଳରୁ ଚିନାମାଟି ପଠାଯାଏ । ବାରଙ୍ଗଠାରେ ଓଡ଼ିଶା ଇଣ୍ଡଷ୍ଟ୍ରିଜ୍ ଦ୍ୱାରା ଚିନାମାଟିର ପାତ୍ର ପ୍ରଭୃତି ତିଆରି ହେଉଛି । ଏଠାରେ ମଧ୍ୟ ଗୋଟିଏ କାଚ କାରଖାନା ଅଛି । କାଚ ତିଆରି କରିବା ପାଇଁ ଏକଜାତୀୟ ସରୁ ବାଲି ଦରକାର । ଏହାଛଡ଼ା ଆହୁରି କେତେକ ପଦାର୍ଥ ମଧ୍ୟ କାଚ ତିଆରିରେ ଦରକାର ହୁଏ । ଓଡ଼ିଶାରେ ମୟୂରଭଞ୍ଜ ଜିଲ୍ଲାର କେତେକ ଅଞ୍ଚଳ, ସମ୍ବଲପୁର ଓ ସୋନପୁର ଅଞ୍ଚଳରେ କାଚ ତିଆରି କରିବା ଉପଯୋଗୀ ବାଲି ମିଳେ । ବାରଙ୍ଗଠାରେ ଯେଉଁ କାଚକାରଖାନା ଅଛି, ସେଥିନିମନ୍ତେ କଟକ ଜିଲ୍ଲାର ନରାଜ ଓ ଚଳଗଡ଼ଠାରୁ ବାଲି ଅଣାଯାଏ । ଓଡ଼ିଶାର ମହାନଦୀ, କାଠଯୋଡ଼ି, କୁଆଖାଇ, ବିରୂପା, ବ୍ରାହ୍ମଣୀ ଓ ବୈତରଣୀ ପ୍ରଭୃତି ନଦୀରେ ରହିଥିବା ବାଲି ରଙ୍ଗହୀନ କାଚପାଇଁ ଉପଯୁକ୍ତ ନ ହେଲେ ମଧ୍ୟ ରଙ୍ଗିନ କାଚ ବୋତଲ ପାଇଁ ବେଶ୍ ଉପଯୁକ୍ତ ।

"ଲୁହା ଓ ଇସ୍ପାତ୍ କାରଖାନାରେ ଚୂନପଥର ଓ କୋଇଲା ବ୍ୟବହାର କରାଯାଏ ବୋଲି ମୁଁ କହିଛି । ତେବେ ଚୂନପଥର ଏବଂ ଡୋଲୋମାଇଟ୍ ମଧ୍ୟ ଓଡ଼ିଶାରେ ଅପର୍ଯ୍ୟାପ୍ତ ରହିଛି । ବର୍ତ୍ତମାନ ଚୂନପଥର ଏବଂ ଡୋଲୋମାଇଟ୍ ଉତ୍ପାଦନରେ ଓଡ଼ିଶା ଭାରତରେ ଅଗ୍ରଣୀ । ଭାରତର

ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଚୂନପଥର ମିଳେ । ବହାରର ସାହାବାଦ୍ ଜିଲ୍ଲା, ସିଂହଭୂମ୍ ଜିଲ୍ଲା, ମଧ୍ୟପ୍ରଦେଶର ଜବଲ୍‌ପୁର, କଟ୍‌ନ, ରାୟପୁର ଓ ଦ୍ରୁଗ୍ ଅଞ୍ଚଳରୁ ଚୂନପଥର ଆମଦାନୀ କରାଯାଏ । ଏହାଛଡ଼ା ଉତ୍ତରପ୍ରଦେଶ, ରାଜସ୍ଥାନ, ମହୀଶୂର, ମାନ୍ଦ୍ରାଜ ଓ ଆନ୍ଧ୍ର ଏବଂ ମହାରାଷ୍ଟ୍ରର ଅନେକ ସ୍ଥାନରେ ଚୂନପଥର ଖନନ କରାଯାଉଛି । ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲାର ବୀରମିତ୍ରପୁର-ହାତୀବାଡ଼ି, ସମ୍ବଲପୁର ଜିଲ୍ଲାର ଡୁଙ୍ଗ୍ରୀ ଏବଂ କୋରାପୁଟ ଜିଲ୍ଲାର କୋଟପାଡ଼ ଅଞ୍ଚଳରେ ମଧ୍ୟ ବସ୍ତୃତ ଚୂନପଥରର ସ୍ତର ରହିଛି ବୋଲି ଜଣାଯାଇଛି । ଭାରତରେ ଏହି ଖଣିଜ ମିଳୁଥିବା ଅଞ୍ଚଳମାନଙ୍କ ମଧ୍ୟରେ ସୁନ୍ଦରଗଡ଼ ଜିଲ୍ଲାରେ ପ୍ରାୟ ୭୦ ନିୟୁତ ଟନ୍‌ର ଚୂନପଥର ଓ ୨୫୨ ନିୟୁତ ଟନ୍‌ର ଡୋଲୋମାଇଟ୍ ରହିଛି । ଭାରତର ପୂର୍ବାଞ୍ଚଳରେ ଥିବା ଲୁହା ଓ ଇସ୍ପାତ୍ କାରଖାନାମାନଙ୍କୁ ପ୍ରଧାନତଃ ଏହିଠାରୁ ଚୂନପଥର ଯୋଗାଇ ଦିଆଯାଇଥାଏ । ତେବେ ଖାଲି ଯେ ଲୁହାକାରଖାନାରେ ଏହା ବ୍ୟବହାର କରାଯାଏ, ତା ନୁହେଁ । ଲୁହାକାରଖାନାରେ ବ୍ୟବହୃତ ହେବା ଛଡ଼ା ସିମେଣ୍ଟ ତିଆରି କରିବାରେ ମଧ୍ୟ ଏହା ବ୍ୟବହୃତ ହୁଏ । ସିମେଣ୍ଟ ଯେ କପରିଭାବରେ ଆମର ଦରକାର, ତା' ତ ଆପଣମାନେ ସମସ୍ତେ ଜାଣନ୍ତି । ଘରଦ୍ୱାର, ନଦୀବନ୍ଧ, ଶିଳ୍ପକାରଖାନା ଆଦି ନିର୍ମାଣ ପାଇଁ ଅପର୍ଯ୍ୟାପ୍ତ ପରିମାଣରେ ସିମେଣ୍ଟ ଆବଶ୍ୟକ । ସେଦୃଷ୍ଟିରୁ ଓଡ଼ିଶାର ଚୂନପଥରର ଗୁରୁତ୍ୱ ଆପଣମାନେ ଉପଲବ୍‌ଧି କରିବେ ।

"ସୁନ୍ଦରଗଡ଼ ଜିଲ୍ଲାର ରାଜଗାଙ୍ଗପୁରଠାରେ ଗୋଟିଏ ସିମେଣ୍ଟ କାରଖାନା ରହିଛି । ଏହାଛଡ଼ା ଆଉ ଗୋଟିଏ ସିମେଣ୍ଟ କାରଖାନା ରହିଛି । ଗୋଟିଏ ସିମେଣ୍ଟ କାରଖାନା ସମ୍ବଲପୁର ଜିଲ୍ଲାରେ ପ୍ରତିଷ୍ଠିତ ହେବାକୁ ଯାଉଛି । କାଗଜ, ଚମଡ଼ା ଓ ଚିନି କାରଖାନାମାନଙ୍କରେ ମଧ୍ୟ ଚୂନପଥରର ବ୍ୟବହାର ଦେଖାଯାଏ । କୃଷିକାର୍ଯ୍ୟରେ ମଧ୍ୟ ଜମି ଉର୍ବର କରିବାକୁ ଏହା ବ୍ୟବହାର କରାଯାଏ ।

"ଲୁହା ଓ ଇସ୍ପାତ୍ କାରଖାନା ପାଇଁ ଆବଶ୍ୟକ ହେଉଥିବା ଲୁହାପଥର, ଚୂନପଥର ଓ କ୍ରୋମାଇଟ୍ ଖଣିଜରେ ଓଡ଼ିଶାର କୌଣସି ଅଭାବ ନ ଥିବାସ୍ଥଳେ ଧାତୁ ନିଷ୍କାସନ ପାଇଁ ଦରକାର ହେଉଥିବା

କୋକଂ-କୋଇଲାର ଘୋର ଅଭାବ ରହିଛି । ଭାରତରେ ମଧ୍ୟ ଆମର କୋକଂ-କୋଇଲା ବିଶେଷ ପରିମାଣରେ ନାହିଁ । ଉଚ୍ଚକୋଟୀର ଲୁହାପଥର ଥିଲାବେଳେ କୋକଂ କୋଇଲାର ଅଭାବ ଆମେ ତୀବ୍ର-ଭାବରେ ଅନୁଭବ କରୁଛୁ । ବିହାରର ବୋକାରୋ ଓ ଝରିଆ କୋଇଲା ଖଣି ଅଞ୍ଚଳରେ କୋକଂ-କୋଇଲା ମିଳେ । ଭାରତରେ ବିଭିନ୍ନ ଜାତୀୟ କୋଇଲାର ପରିମାଣ ପ୍ରାୟ ୧୯,୩୩୦ ନିୟୁତ ଟନ୍ ବୋଲି ଜଣାଯାଇଛି ଏବଂ ଏହା ୪,୦୦୦ ଫୁଟ ଗଭୀରତା ମଧ୍ୟରୁ ହିସାବ କରି ଜଣାଯାଇଛି । ଭାରତରେ କୋକଂ କୋଇଲାର ପରିମାଣ ପ୍ରାୟ ୨,୮୦୦ ନିୟୁତ ଟନ୍ । ଅନେକ ସମୟରେ ଆମେ ଏହି ଧରଣର କୋଇଲାକୁ ବାଜେ କାର୍ଯ୍ୟରେ ବ୍ୟବହାର କରିଥାଉ । ଏ ଦିଗରେ ଆମକୁ ହୁସିଆର ରହିବାକୁ ପଡ଼ିବ; କାରଣ ଭବିଷ୍ୟତରେ ଲୁହା ଓ ଇସ୍ପାତ୍ ଉତ୍ପାଦନ ବୃଦ୍ଧି କରାଯିବାର ଲକ୍ଷ୍ୟ ଥିଲାବେଳେ କୋକଂ-କୋଇଲା ଅତ୍ୟଧିକ ପରିମାଣରେ ଦରକାର ହେବ । ତେଣୁ ଏହାର ସଂରକ୍ଷଣ ଦିଗରେ ଏବଂ ଉତ୍କୃଷ୍ଟ ଧରଣର କୋଇଲାକୁ ଧୋଇ ଏବଂ ଉତ୍କୃଷ୍ଟ କୋଇଲା ସହିତ ମିଶାଇ ଏହାକୁ ଉନ୍ନତ କରିବା ଦିଗରେ ବ୍ୟବସ୍ଥା ଗ୍ରହଣ କରାଯାଉଛି । ଏହାଛଡ଼ା ଯେଉଁ କୋଇଲା କୋକଂ-କୋଇଲା ଧରଣର ନୁହେଁ, ତାକୁ କିପରି ଲୁହାକାରଖାନାରେ ବ୍ୟବହାର କରାଯାଇ ପାରିବ, ତା ପାଇଁ ମଧ୍ୟ ଗବେଷଣା ଚାଲିଛି । ନିକୃଷ୍ଟ ଧରଣର କୋଇଲାକୁ ସଫା କରିବା ପାଇଁ କେତୋଟି କାରଖାନା ସ୍ଥାପିତ ହେଲାଣି ।

"ଭାରତର ପ୍ରଧାନ କୋଇଲାଖଣିମାନ ବିହାର ପ୍ରଦେଶରେ ଦେଖିବାକୁ ମିଳେ । ବିହାରର ଝରିଆ, ବୋକାରୋ, କର୍ଣ୍ଣପୁରା, ଗିରିଡ଼ିହି, ରାମଗଡ଼ ଅଞ୍ଚଳରେ ବହୁତ କୋଇଲାଖଣି ରହିଛି । ତା'ଛଡ଼ା ପଶ୍ଚିମ-ବଙ୍ଗଳାର ରାଣୀଗଞ୍ଜ, ଓଣ୍ଡାଲ, ଦାର୍ଜିଲିଂ ଅଞ୍ଚଳ; ମଧ୍ୟପ୍ରଦେଶର ସୋହାଗପୁର, ପେଞ୍ଚ-କାନ୍‌ହାନ୍ ଉପତ୍ୟକା, କର୍ବା, ଝିଲମିଲ, ବିଶ୍ରାମପୁର ଏବଂ ଉତ୍ତରପ୍ରଦେଶର ସିଙ୍ଗରାଉଲି, ଆନ୍ଧ୍ରପ୍ରଦେଶର ସିଙ୍ଗାରେଣୀ, ଆସାମର ଦାରନ୍‌ଗିରି ଏବଂ କାଶ୍ମୀରର କାଲାକୋଟ୍ ଅଞ୍ଚଳରେ ମଧ୍ୟ କୋଇଲା ମିଳେ । ଏହାଛଡ଼ା ମାନ୍ଦ୍ରାଜର ଦକ୍ଷିଣ ଆରକଟ୍ ଜିଲ୍ଲା ଅନ୍ତର୍ଗତ ନେଭେଲି ଏବଂ ରାଜସ୍ଥାନର ପାଲାନାଠାରେ ନିକୃଷ୍ଟ ଧରଣର କୋଇଲା



( ଝରିଆ କୋଇଲା ଖଣି ଅଞ୍ଚଳର ଏକ ଦୃଶ୍ୟ )

ବା ଲିଗ୍‌ନାଇଟ୍ ମିଳେ । ତେବେ, ଏ ତ ଗଲା ଭାରତର ବିଭିନ୍ନ ଅଞ୍ଚଳର କଥା; ଓଡ଼ିଶାରେ ଆମର କେଉଁଠାରେ କୋଇଲା ମିଳେ, ତାହା ଦେଖିବାର କଥା । ଢେଙ୍କାନାଳ ଜିଲ୍ଲାର ତାଳଚେରଠାରେ ଏବଂ ସମ୍ବଲପୁର ଜିଲ୍ଲାର ରାମପୁର ଅଞ୍ଚଳରେ କୋଇଲାଖଣିମାନ ରହିଛି । ତାଳଚେର ଅଞ୍ଚଳରେ କୋଇଲା ପାଇଁ ବହୁତ ଅନୁସନ୍ଧାନ କରାଯାଇଛି ଏବଂ ଏହି ଅଞ୍ଚଳରେ ମାଟିତଳେ ପ୍ରଚୁର କୋଇଲା ରହିଛି ବୋଲି ଜଣାପଡ଼ିଛି । ଏହି ମହଜୁଦ୍ ଥିବା କୋଇଲାର ଉପଯୋଗ ପାଇଁ ତିନୋଟି ନୂଆ ଖଣିରେ କାମ ଆରମ୍ଭ କରାଯିବାର ବ୍ୟବସ୍ଥା କରାଯାଉଛି । ଓଡ଼ିଶାରେ ଯେଉଁ ପ୍ରଚୁର କୋଇଲା ରହିଛି, ତାହା ଆମର ଶିଳ୍ପବିକାଶରେ ଯଥେଷ୍ଟ ସାହାଯ୍ୟ କରିବ । ଏହି କୋଇଲାରୁ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବା ପାଇଁ ସରକାର ଏକ ଯୋଜନା କରୁଛନ୍ତି ଏବଂ ତାଳଚେରଠାରେ ଗୋଟିଏ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କେନ୍ଦ୍ର ସ୍ଥାପିତ ହେବାକୁ ଯାଉଛି । ତାଳଚେରର କୋଇଲାକୁ ବ୍ୟବହାର କରି ସେଠାରେ କୌଣ୍ଡି ଓଭନ୍



( ପଥର କୋଇଲାର ଉତ୍ତୋଳନ ଓ ତାର ସାଧାରଣ ବ୍ୟବହାର )

କାରଖାନା ବସାଇବା ସଙ୍ଗେ ସଙ୍ଗେ ଲୁହା ତରଳାଇବା ପାଇଁ ବ୍ଲେ-ସାଫ୍ଟ୍ ଚୁଲ୍ଲୀ ନିର୍ମାଣ କରିବା କଥା ରାଜ୍ୟ ସରକାର ବିଚାର କରୁଛନ୍ତି ।

"ଆପଣମାନେ ଜାଣିଥିବେ ଯେ, କୋଇଲାକୁ ଖାଲି ଜାଳେଣୀରୂପେ ବ୍ୟବହାର କରାଯାଏ ବୋଲି; କିନ୍ତୁ କୋଇଲାରୁ ଯେ ବହୁତ ରକମର ଜିନିଷ ବାହାରି ପାରୁଛି, ତା ଶୁଣିଲେ ଆପଣ ଆଶ୍ଚର୍ଯ୍ୟ ହୋଇଯିବେ । କୋଇଲାକୁ ବ୍ୟବହାର କରି ରେଳଗାଡ଼ି ଚାଲୁଛି । କୋଇଲାକୁ ଆମେ ଚୁଲ୍ଲୀରେ ବ୍ୟବହାର କରି ସେଷେଇବାସ କରୁ । ଏ ତ ଗଳ୍ପ ସାଧାରଣ କଥା । ତା'ଛଡ଼ା ଆପଣମାନଙ୍କୁ ଏଇନେ କହିବି ଯେ କୋଇଲାରୁ ବିଦ୍ୟୁତ୍‌ଶକ୍ତି ବି ବାହାର ପାରିବ । ଉତ୍କୃଷ୍ଟ ଧରଣର କୋକିଂ-କୋଇଲା ବ୍ୟବହାର କରି ଧାତୁ ନିଷ୍କାସନ କରାଯାଇ ପାରିବ । ଏହା ବାଦ୍ କୋଇଲାରୁ ବି ପେଟ୍ରୋଲିଅମ୍ ବା ଖଣିଜ ତେଲ ତିଆରି କରାଯାଇପାରେ । ଶକ୍ତି-ଉତ୍ପାଦକ ଖଣିଜ ମଧ୍ୟରେ କୋଇଲା ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । କୋଇଲାରୁ ଅଲକତରା, ଗନ୍ଧକର୍ପୂର, ରଙ୍ଗ, ଔଷଧ ମଧ୍ୟ ତିଆରି ହେଉଛି । ଦିନପରି ଲାଗୁଥିବା ସାକାରିନ୍ ଔଷଧ ମଧ୍ୟ କୋଇଲାରୁ ତିଆରି ହୋଇପାରିଛି । ଏହାଛଡ଼ା କଳକାରଖାନାର ଦରକାର ପଡ଼ୁଥିବା ଆହୁରି ଅନେକ ଜିନିଷ ତିଆରି କରିବାରେ କୋଇଲା ବ୍ୟବହୃତ ହୋଇଥାଏ । ଯେଉଁ ଦେଶ ଯେତିକି କୋଇଲା ଉତ୍ପାଦନ କରୁଛି, ସେ ଦେଶ ଶିଳ୍ପରେ ସେତିକି ସମୃଦ୍ଧ ହୋଇପଡ଼ୁଛି । କୋଇଲାରୁ ଏଇ ଯେଉଁ ବିଭିନ୍ନ ଦ୍ରବ୍ୟ ତିଆରି କରାଯାଇପାରୁଛି, ସେ ଦୃଷ୍ଟିରୁ ବିଚାର କଲେ ଖଣିଜ ଦ୍ରବ୍ୟମାନଙ୍କ ମଧ୍ୟରେ କୋଇଲା ଯେ ଗୋଟିଏ ଅତି ମୂଲ୍ୟବାନ୍ ଖଣିଜ, ତାହା ବିନା ଦ୍ୱିଧାରେ କୁହାଯାଇପାରେ । ସେଥିପାଇଁ ପରା କୋଇଲାକୁ କହନ୍ତି "କୃଷ୍ଣ ହୀରକ" ବା "କଳା ହୀରା" । ଯଦ୍ୟପି କଳା ଅଙ୍ଗାରପରି ରୂପ ଗିଜ-ଗିଜଆ ଦିଶିଲେ କ'ଣ ହେବ, ଗୁଣରେ ଏହା ଅତି ଉତ୍କୃଷ୍ଟ ।

ତୃତୀୟ ପଞ୍ଚବାର୍ଷିକ ଯୋଜନାରେ ଶିଳ୍ପବିକାଶ ଦିଗରେ ବିଶେଷ ଗୁରୁତ୍ୱ ଦିଆଯାଇଥିବାରୁ ସରକାର ଉପଯୁକ୍ତ ପରିମାଣରେ କୋଇଲା ଉତ୍ପାଦନ ପାଇଁ ବିଶେଷ ବ୍ୟବସ୍ଥା ଅବଲମ୍ବନ କରିଛନ୍ତି । ଆମ ଦେଶରେ

ଘରୋଇ ଖଣି-ମାଲିକମାନେ ଅଧିକାଂଶ କୋଇଲା ଉତ୍ପାଦନ କରୁଛନ୍ତି । ସରକାରୀ କ୍ଷେତ୍ରରେ କୋଇଲା ଉତ୍ପାଦନ ପାଇଁ ଗୋଟିଏ ସଂସ୍ଥା ଗଢ଼ାଯାଇଛି । ଏହାର ନାଁ ହେଉଛି 'ଜାତୀୟ କୋଇଲା ଉଦ୍ୟୋଗ ସଂସ୍ଥା' । ଏହାର ମୁଖ୍ୟ କାର୍ଯ୍ୟାଳୟ ରହିଛି ରାଞ୍ଚିରେ ।

"ଏସବୁ ଖଣିଜ ଛଡ଼ା ଓଡ଼ିଶାରେ ଆଲୁମିନିଅମ ଧାତୁର ଖଣିଜ ବକ୍ସାଇଟ୍ ପ୍ରଚୁର ପରିମାଣରେ ରହିଛି । ଯେଉଁ ଖଣିଜ କଥା ଏପର୍ଯ୍ୟନ୍ତ କହିଆସୁଥିଲି, ସେଗୁଡ଼ିକ ଲୁହା ଓ ଇସ୍ପାତ୍ କାରଖାନା ପାଇଁ ତ ଅପରିହାର୍ଯ୍ୟ—ତେବେ ଆଲୁମିନିଅମ୍ ଶିଳ୍ପର ବିକାଶ ନିମନ୍ତେ ଓଡ଼ିଶାରେ ମଧ୍ୟ ପ୍ରଶସ୍ତ କ୍ଷେତ୍ର ରହିଛି । ଆଲୁମିନିଅମ୍ ଶିଳ୍ପ ପାଇଁ ଦରକାର ଉପଯୁକ୍ତ ଧରଣର ବକ୍ସାଇଟ ଖଣିଜ, ମଧ୍ୟପ୍ରଦେଶର କଟନି, ବିଲାସପୁର, ଦୁର୍ଗ, ରେୱା, ସୁରଗୁଜା, ରାୟଗଡ଼; ବିହାରର ରାଞ୍ଚି ନିକଟବର୍ତ୍ତୀ ଲୋହାରଡ଼ାଗା-ମହୀଶୂରର ବେଲଗାଓଁ; ମହାରାଷ୍ଟ୍ରର ରତ୍ନଗିରି, ସତାରା ଅଞ୍ଚଳ ଏବଂ ମାଡ୍ରାଜର ସାଲେମ୍ ଜିଲାର ବିଭିନ୍ନ ଅଞ୍ଚଳରେ ଉଚ୍ଚ ଧରଣର ବକ୍ସାଇଟ୍ ଥିବାର ଦେଖାଯାଏ । ଭାରତର ଏସବୁ ଅଞ୍ଚଳ ଛଡ଼ା ଓଡ଼ିଶାର କଳାହାଣ୍ଡି ଜିଲାର କାଶୀପୁର, କସଲ୍ଘାଟ, ମହୁଲପାଟଣା; ସମ୍ବଲପୁର ଏବଂ ବଲାଙ୍ଗୀର ଜିଲାରେ ମଧ୍ୟ ବକ୍ସାଇଟ୍ ରହିଛି । ବକ୍ସାଇଟ୍ ହେଲା ଆଲୁମିନିଅମ୍ ଶିଳ୍ପ ପାଇଁ ମୁଖ୍ୟ କଞ୍ଚାମାଲ । ଏହାଛଡ଼ା ଆଉ କେତୋଟି ସହଯୋଗୀ କଞ୍ଚାମାଲ ମଧ୍ୟ ଏହି ଶିଳ୍ପପାଇଁ ଦରକାର ପଡ଼ିଥାଏ । ସେଗୁଡ଼ିକ ହେଲା—କଷ୍ଟିକ୍ସୋଡ଼ା, କ୍ରାଓଲାଇଟ୍ ଫ୍ଲୋରସ୍ପାର ଏବଂ ପେଟ୍ରୋଲିଅମ୍ କୋକ୍ । କ୍ରାଓଲାଇଟ୍ ଖଣିଜ ଭାରତରେ ଆଦୌ ମିଳେ ନାହିଁ; ଗ୍ରିନ୍ଲାଣ୍ଡରୁ କ୍ରାଓଲାଇଟ୍ ଆମଦାନୀ କରିବାକୁ ପଡ଼େ । ଫ୍ଲୋରସ୍ପାର ମଧ୍ୟ ଆମ ଦେଶରେ ବିଶେଷ ପରିମାଣରେ ନାହିଁ । ମଧ୍ୟପ୍ରଦେଶର ଖଇରାଗଡ଼ଠାରେ ଉନ୍ନତ ଧରଣର ଫ୍ଲୋରସ୍ପାର ଖଣିଜ ମିଳେ; କିନ୍ତୁ ଆମର ଚାହିଦା ଏଥିରେ ପୂରଣ ହୋଇପାରେ ନାହିଁ । ତେଣୁ ବିଦେଶରୁ ମଧ୍ୟ ଏହି ଖଣିଜ ଆମକୁ ଆମଦାନୀ କରିବାକୁ ପଡ଼େ । କଷ୍ଟିକ୍ସୋଡ଼ା ଓ ପେଟ୍ରୋଲିଅମ୍ କୋକ୍ ଆମ ଦେଶରୁ ଆମେ ସାଧାରଣତଃ ପାଇଥାଉ ।

ଭାରତରେ ବକ୍ସାଇଟ୍ ଆଜି ଅନେକ ଶିଳ୍ପରେ ବ୍ୟବହାର କରାଯାଇଥାଏ । ସିମେଣ୍ଟ ଶିଳ୍ପ, ରିଫ୍ରାକ୍ଟରି ଶିଳ୍ପ ଏବଂ ରାସାୟନିକ ଶିଳ୍ପ-କେନ୍ଦ୍ରମାନଙ୍କରେ ଏହା ବ୍ୟବହୃତ ହୋଇଥାଏ । ପେଟ୍ରୋଲିଅମ୍ ବା ଖଣିଜ ତେଲକୁ ପରିଷ୍କୃତ କରିବାରେ ଏହା ମଧ୍ୟ ବ୍ୟବହୃତ ହୋଇଥାଏ । ବକ୍ସାଇଟ୍‌ରୁ ଯେଉଁ ଆଲୁମିନିଅମ୍ ଧାତୁ ବାହାରେ ତାହା ଓଜନରେ ହାଲୁକା ହୋଇଥିବାରୁ, ଶକ୍ତ ହୋଇଥିବାରୁ, ବିଦ୍ୟୁତ୍‌ଶକ୍ତି ପରିବହନ କରିପାରୁଥିବାରୁ ଏବଂ ସହଜରେ କ୍ଷୟପ୍ରାପ୍ତ ହେଉ ନ ଥିବାରୁ ଶିଳ୍ପ-କ୍ଷେତ୍ରରେ ଏହାର ପ୍ରାଧାନ୍ୟ ବହୁତ ବେଶୀ । ଜଳ, ସ୍ଥଳ ଓ ଆକାଶରେ ଗତି କରୁଥିବା ବିଭିନ୍ନ ଯାନବାହନ ତିଆରି କରିବାରେ, ହାଲୁକାପାତ୍ର ପ୍ରଭୃତି ତିଆରି କରିବାରେ ଏହା ବିଶେଷ ବ୍ୟବହୃତ ହୋଇଥାଏ । ଭାରତରେ ବିପୁଳ ବକ୍ସାଇଟ ଖଣିଜ ଥିବାଯୋଗୁ ଆଲୁମିନିଅମ୍ ଶିଳ୍ପର ବିକାଶ ନିମନ୍ତେ ଅନୁକୂଳ ବ୍ୟବସ୍ଥା ରହିଛି । ଏହି ଶିଳ୍ପର ବିକାଶ ନିମନ୍ତେ ବିଦ୍ୟୁତ୍‌ଶକ୍ତିର ଅଭାବ ମଧ୍ୟ ନାହିଁ । ତେବେ ବର୍ତ୍ତମାନ ବକ୍ସାଇଟ୍‌ର ଖନନ ଏବଂ ଏହାକୁ ପରିଷ୍କାର କରିବାରେ କେତେକ ଅସୁବିଧା ରହିଛି । ବକ୍ସାଇଟ୍ ମିଳୁଥିବା ଅଞ୍ଚଳକୁ ଯିବାପାଇଁ ଉପଯୁକ୍ତ ରାସ୍ତାର ଅଭାବ ରହିଛି । ତେବେ ନିକଟ ଭବିଷ୍ୟତରେ ଏ ସବୁ ଅସୁବିଧା ଦୂରୀଭୂତ ହୋଇ ଭାରତର ଆଲୁମିନିଅମ୍ ଶିଳ୍ପର ମାନ, ବିଦେଶର ଆଲୁମିନିଅମ୍ ଶିଳ୍ପର ମାନ ସହିତ ସମାନ ହୋଇପାରିବ ବୋଲି ଆଶା କରାଯାଉଛି । ଓଡ଼ିଶାରେ ମଧ୍ୟ ଆଉ କିଛି ଦିନପରେ ଶସ୍ତାରେ ବୈଦ୍ୟୁତିକ ଶକ୍ତି ମିଳିପାରିବ । ଏଥିପାଇଁ ଅନେକ ଯୋଜନା କାର୍ଯ୍ୟକାରୀ ହେବାକୁ ଯାଉଛି । ବର୍ତ୍ତମାନ ସମ୍ବଲପୁର ଜିଲ୍ଲାର ହୀରାକୁଦଠାରେ ଆଜି ଗୋଟିଏ ଆଲୁମିନିଅମ୍ ଢଳେଇ କାରଖାନା ଅଛି । ଆଉ ଅଳ୍ପ ଦିନପରେ ମଧ୍ୟ ଆଲୁମିନିଅମ୍ ଶିଳ୍ପ ଓଡ଼ିଶାରେ ଏକ ପ୍ରଧାନ ଶିଳ୍ପଭାବରେ ମୁଣ୍ଡ ଟେକି ଠିଆହେବ ।

ତେବେ ଆପଣମାନେ ଜାଣିରଖନ୍ତୁ ଯେ, ଖଣିଜ ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ପଛରେ ପ୍ରଧାନତଃ କାର୍ଯ୍ୟ କରୁଛି । କେବଳ ଶିଳ୍ପ କାହିଁକି, କୃଷିର ଉନ୍ନତି ଦିଗରେ ମଧ୍ୟ ଖଣିଜର ଅବଦାନ ରହିଛି । କୃଷିକ୍ଷେତ୍ରରେ ବିଭିନ୍ନ ସାର ପ୍ରଭୃତି ତିଆରି କରିବାରେ ଖଣିଜ ବ୍ୟବହୃତ ହୁଏ ।

ଜିପ୍‌ସମ୍ ନାମକ ଖଣିଜ ଆମୋନିୟମ୍ ସଲ୍‌ଫେଟ୍ ତିଆରି କରିବାରେ ବ୍ୟବହୃତ ହୁଏ । ଏହାଛଡ଼ା ସିମେଣ୍ଟ, ପ୍ଲାଷ୍ଟର୍ ଅଫ୍ ପ୍ୟାରିସ୍ ପ୍ରଭୃତି ତିଆରି କରିବାରେ ଜିପ୍‌ସମ୍ ଆବଶ୍ୟକ ହୁଏ । ରାଜସ୍ଥାନର ବିକାନିର୍, ଯୋଧ୍‌ପୁର ଅଞ୍ଚଳରେ ଜିପ୍‌ସମ୍ ବହୁତ ମିଳେ । ଏହାଛଡ଼ା ମାନ୍ଦ୍ରାଜର ତିରିଚନାପଲ୍ଲୀ ଜିଲ୍ଲାରେ ମଧ୍ୟ ଜିପ୍‌ସମ୍ ମିଳେ । ଆମ ଓଡ଼ିଶାରେ କିନ୍ତୁ ଏ ଖଣିଜ ନାହିଁ । ଆପାଟାଇଟ୍ ଓ ଫସ୍‌ଫେଟିକ୍ ନଡ୍ୟୁଲ୍ ଖଣିଜରୁ ଫସ୍‌ଫେଟ୍ ସାର ଉତ୍ପାଦନ ହୁଏ । ବିହାରର ସିଂହଭୂମ ଜିଲ୍ଲାରେ ଆପାଟାଇଟ୍ ମିଳେ ଏବଂ ମାନ୍ଦ୍ରାଜରେ ଫସ୍‌ଫେଟିକ୍ ନଡ୍ୟୁଲ୍ ଖଣିଜ ମିଳେ । ତେବେ ଏହା ଯଥେଷ୍ଟ ନ ହେବାରୁ ପ୍ରତ୍ୟେକ ବର୍ଷ ଫସ୍‌ଫେଟ୍ ସାର ଆମକୁ ବାହାରୁ ଆମଦାନୀ କରିବାକୁ ପଡ଼ୁଛି । ଏସବୁ ଖଣିଜ ମଧ୍ୟ ଓଡ଼ିଶାରେ ନାହିଁ । କୃଷିରେ ମଧ୍ୟ ଆହୁରି ଅନେକ ଖଣିଜ ବ୍ୟବହାର କରାଯାଏ । ତେବେ ଏଇଥିରୁ ଆପଣମାନେ ବୁଝିପାରୁଥିବେ ଯେ, ଆଜିର ସଭ୍ୟତାରେ ଖଣିଜର ଭୂମିକା କେତେ ଗୁରୁତ୍ୱପୂର୍ଣ୍ଣ । ଖଣିଜ ବିନା କୃଷି କି ଶିଳ୍ପ କୌଣସିଟିର ବିକାଶ ହୋଇପାରେନା । ଆଜି ହୁଏତ ଆପଣମାନଙ୍କର ଏଇ ଜମିବାଡ଼ି ଥିବା ଅଞ୍ଚଳରେ ଖଣିଜର ସନ୍ଧାନ ମିଳିଲେ ସରକାର ସେସବୁ ଦାଖଲ କରିପାରନ୍ତି ଏବଂ ସେସବୁ ଜାଗାରେ ଖଣି ଖୋଲାହୋଇଯାଇ-ପାରେ । ଆପଣମାନେ ଆପଣଙ୍କର ଜମି ଛାଡ଼ିବାକୁ ନାରାଜ ବି ହେବେ ନିଶ୍ଚୟ; କାରଣ ଜମିବାଡ଼ି ଆପଣମାନଙ୍କର ସବୁକିଛି । ଜମିବାଡ଼ିରୁ ଫସଲପାତି ଆମଦାନୀ କରି ତାକୁ ବିକିଭାଙ୍ଗି ଆପଣମାନଙ୍କ ମଧ୍ୟରୁ ଅଧିକାଂଶ ପେଟପାଟଣା କରୁଛନ୍ତି । ତେଣୁ ତାକୁ ଛାଡ଼ିଲାବେଳକୁ ଆପଣମାନେ ନିଶ୍ଚୟ କୁଣ୍ଠିତ ହେବେ; କିନ୍ତୁ ସେଥିପାଇଁ ତ ଆପଣମାନଙ୍କୁ ଉପଯୁକ୍ତ କ୍ଷତିପୂରଣ ଦିଆଯିବ । ସେଇ ଜମିବାଡ଼ି ଅଞ୍ଚଳରେ ଖଣି ଖୋଲା ହୋଇ ଯେତେବେଳେ ତା'ର ଭିତରୁ ମୂଲ୍ୟବାନ୍ କୌଣସି ଖଣିଜ ବାହାରିବ, ସେତେବେଳେ ଆପଣମାନେ ବୁଝିବେ ତା'ର ଗୁରୁତ୍ୱ; ନିଜ ଆଖିରେ ଦେଖିବେ ତା'ର ପ୍ରୟୋଜନୀୟତା ଏବଂ ଆପଣମାନଙ୍କର ଏଇ ଗ୍ରାମାଞ୍ଚଳରେ ସେଇ ଖଣିଜଯୋଗୁଁ କଳକାରଖାନା ଗଢ଼ିଉଠିବ—ତାହାହିଁ ବେକାର-ସମସ୍ୟାର ସମାଧାନ କରିବ କେତେକାଂଶରେ । ସେଇ ଖଣିରେ ଓ କଳକାରଖାନାରେ କାମ କରିବା ପାଇଁ ତ ଆପଣମାନେ ହିଁ ଲୋଡ଼ା ହେବେ । ସେତେବେଳେ ନିଶ୍ଚୟ ଆପଣ ଜମିବାଡ଼ି ହରାଇଥିବା

ଦୁଃଖ କେତେକାଂଶରେ ଭୁଲିଯିବେ । ଏଇ ଖଣି ଓ କଳକାରଖାନା ଆପଣମାନଙ୍କର ବ୍ୟକ୍ତିଗତ ଉପାର୍ଜନର ପନ୍ଥା ଖୋଲିବା ସଙ୍ଗେ ସଙ୍ଗେ ସମଗ୍ର ଦେଶର ଅର୍ଥନୈତିକ ମୂଳଦୁଆକୁ ଟାଣ କରିବ । ସୁତରାଂ ସମଗ୍ର ଦେଶର କଲ୍ୟାଣ ନିମନ୍ତେ ଆପଣମାନେ ଜମିବାଡ଼ି ଛାଡ଼ିବାରେ କୁଣ୍ଠାବୋଧ କରିବା ଆଦୌ ଉଚିତ ନୁହେଁ । ବର୍ତ୍ତମାନ ଏ କଥାଟି କହିରଖୁଛି; କାରଣ ଭବିଷ୍ୟତରେ ଏପରି କିଛି ହେଲେ ସେଥିରେ ଆପଣମାନେ ନିଶ୍ଚୟ ଆଦର୍ଶ ଦେଖାଇବେ । ମୁଁ ଜାଣେ, ଗାଁଗଣ୍ଡାରେ ଜମିବାଡ଼ି ନେଇ କି ଗଣ୍ଡଗୋଳ ହୁଏ, କି ଅପ୍ରୀତିକର ପରିସ୍ଥିତି ଉପୁଜେ । ସରକାରଙ୍କର ଯୋଜନା ସହିତ ଆପଣମାନଙ୍କର ସହଯୋଗ ରହିଲେ ଯୋଜନା କାର୍ଯ୍ୟକାରୀ ହେବାରେ କିଛି ଅସୁବିଧା ରହିବ ନାହିଁ ।

ଦୀର୍ଘ ସମୟ ଧରି ଆପଣମାନେ ଯେ ମୋର ବକ୍ତୃତା ଶୁଣିଛନ୍ତି ସେଥିନିମନ୍ତେ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି । ଅଧିକାଂଶ ତ ସିନେମା ଦେଖିବେ ବୋଲି ଅପେକ୍ଷା କରି ରହିଥିବେ । ବେଶ୍ କଥା, ଏଥର ସିନେମା ଦେଖାଇବା । ତେବେ ଏଇ ଯେଉଁ ବାକ୍ସଟିରେ କେତେଗୁଡ଼ିଏ ଖଣିଜ ରହିଛି, ତାକୁ ମୁଁ ସରପଞ୍ଚଙ୍କ ମାରଫତରେ ଛାଡ଼ିଦେଇ ଯାଉଛି । ମଝିରେ ମଝିରେ ଆସି ଆପଣମାନେ ସେଗୁଡ଼ିକ ଦେଖିଯାଉଥିବେ— ତାହାହେଲେ ଖଣିଜ ଚିହ୍ନିବାରେ ଅଭ୍ୟାସ ହୋଇଯିବ ।"

## ୪

ଅଫିସର୍ ଭାଷଣ ଦେଇସାରି ଚୌକିରେ ବସିଗଲେ । ସଭାରେ କରଗୋଳା ଗାଁ ସ୍କୁଲରେ ପଢ଼ୁଥିବା ଅନେକ ପିଲା ଆସି ବକ୍ତୃତା ଶୁଣୁଥାଆନ୍ତି । ସେମାନଙ୍କର ଶିକ୍ଷକମାନେ ମଧ୍ୟ ଆସି ବକ୍ତୃତା ଶୁଣୁଥାଆନ୍ତି । ଗାଁ ଯୁବକସଂଘର ଟୋକାମାନେ ମଧ୍ୟ ସେଦିନ ଧୀରସ୍ଥିରଭାବରେ ବସି ଅଫିସର୍ ବୁଝାଉଥିବା କଥାଗୁଡ଼ିକ ଶୁଣୁଥାଆନ୍ତି । ବକ୍ତୃତା ଶେଷ କରି ଅଫିସର୍ ବସିବାପରେ ଲୋକମାନଙ୍କ ମଧ୍ୟରେ ଫୁଟୁର୍-ଫାଟର ହେବାରୁ ଶୁଣାଗଲା ଯେ ସେମାନେ ଆଜି କେତେକ ପ୍ରଶ୍ନ ଅଫିସର୍‌ଙ୍କୁ ପଚାରିବେ । କାରଣ ଇଏ ତ ଗୋଟାଏ ଦିନ ! ସମସ୍ତ ପଚାରିବେ ଟିକିଏ ଭେଟରି ହେଲେ

ହେଉଛି; କିନ୍ତୁ ସେମାନେ ତାଙ୍କର ସନ୍ଦେହ ତୁଟି ଦୂର କରିବେ । ଏ ସୁବିଧାସୁଯୋଗ ତ ସବୁବେଳେ ମିଳେ ନାହିଁ । କେତେକ ଆସି ସରପଞ୍ଚଙ୍କୁ ଅଫିସରଙ୍କୁ କହିବା ପାଇଁ କହିଲେ ଯେ ସେମାନେ କେତେକ ପ୍ରଶ୍ନ ପଚାରିବାକୁ ଇଚ୍ଛା କରୁଛନ୍ତି । ଲୋକମାନଙ୍କର ଆଗ୍ରହ ଦେଖି ଅଫିସର୍ ଆନନ୍ଦର ସହିତ ପ୍ରଶ୍ନର ଉତ୍ତର ଦେବେ ବୋଲି ସମ୍ମତି ଦେଲେ ।

କରଗୋଳା ଗାଁର ବୃନ୍ଦାବନ ପ୍ରଧାନ ଆସାମରେ ଅନେକ ଦିନଧରି ଚା-ବଗିଚା ଅଞ୍ଚଳରେ କାମ କରି ପ୍ରାୟ ପାଞ୍ଚ ବର୍ଷ ହେଲା ଘରକୁ ଫେରିଛନ୍ତି । ଆସାମରେ ଅନେକ ଖଣିଜ ତୈଳକୂପ ଥିବାର ସେ ଦେଖିଛନ୍ତି । ଆସାମର ଡିଗ୍‌ବୋଇ, ନହର୍‌କଟିଆ, ମୋରାନ୍ ଏବଂ ଶିବସାଗର ପ୍ରଭୃତି ଅଞ୍ଚଳରେ କିପରି ଖଣିଜ ତୈଳ ଅନୁସନ୍ଧାନ କାର୍ଯ୍ୟ ଚାଲିଛି, ସେସବୁ ସେ ଦେଖିଛନ୍ତି । ଭାରତରେ ଆସାମ ଯେ ହେଉଛି ଏହି ଖଣିଜ ତୈଳ ବା ପେଟ୍ରୋଲିଅମ୍ ଶକ୍ତିର ପ୍ରଧାନ ପ୍ରାଣକେନ୍ଦ୍ର, ସେକଥା ସେ ତାଙ୍କର ଅନୁଭୂତିରୁ ବେଶ୍ ବୁଝିପାରିଛନ୍ତି । ପେଟ୍ରୋଲିୟମ୍ ଅନୁସନ୍ଧାନ ଏବଂ ସେଥିନିମନ୍ତେ ହେଉଥିବା ଡ୍ରିଲିଂ ବା ଖନନ ପ୍ରଭୃତି କିପରି ବ୍ୟୟସାପେକ୍ଷ, ତା ସେ ଶୁଣିଛନ୍ତି । ପ୍ରାୟ ୨୦ଟି ପ୍ରାଥମିକ ପରୀକ୍ଷା କରାଯାଉଥିବା ତୈଳକୂପମାନଙ୍କ ମଧ୍ୟରୁ ପ୍ରାୟ ଗୋଟିଏ ମାତ୍ର ତୈଳକୂପ ଉପଯୁକ୍ତ ପରିମାଣରେ ଖଣିଜ ତୈଳ ଯୋଗାଇଥାଏ ଏବଂ ଗୋଟିଏ ଗୋଟିଏ ତୈଳକୂପ ଖନନ କରିବାରେ ବର୍ଷକ ମଧ୍ୟରେ ପ୍ରାୟ ୭୦ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇପାରେ ଏବଂ ଗୋଟିଏ ତୈଳକ୍ଷେତ୍ର ଅନୁସନ୍ଧାନ କରିବାରେ ପ୍ରାୟ ୭ କୋଟି ଟଙ୍କା ଖର୍ଚ୍ଚ ହୋଇଥାଏ—ଏ କଥା ସେ ଆସାମର ତୈଳ-କ୍ଷେତ୍ର ଅଞ୍ଚଳରେ କାମ କରୁଥିବା ବହୁ ବିଶେଷଜ୍ଞଙ୍କ ମୁହଁରୁ ଶୁଣିଛନ୍ତି । ତେବେ ଆସାମ ଛଡ଼ା ଆଉ କେଉଁ ଅଞ୍ଚଳରେ ପେଟ୍ରୋଲିଅମ୍ ମିଳେ ବା ମିଳିବାର ସମ୍ଭାବନା ଅଛି, ସେ ବିଷୟରେ ସେ ଜାଣିବାକୁ ବିଶେଷ ଆଗ୍ରହୀ । ଅଫିସର୍ ତ ପେଟ୍ରୋଲିଅମ ବିଷୟରେ କିଛି କହି ନାହାନ୍ତି । ତେଣୁ ସେ ଏ ବିଷୟରେ ପ୍ରଶ୍ନ ପଚାରିବାକୁ ସ୍ଥିର କରି ଉଠି ପଚାରିଲେ, "ଆସାମରେ ପ୍ରଚୁର ପେଟ୍ରୋଲିଅମ ମାଟିତଳେ ରହିଛି ବୋଲି ଆମେ ସବୁବେଳେ ଶୁଣୁଛୁ ଏବଂ ମୁଁ ତ ନିଜେ ଆସାମରେ ମାଟିତଳୁ ପେଟ୍ରୋଲିଅମ ବାହାରିବାର ଦେଖିଛି । ତେବେ ଆସାମ ଛଡ଼ା ତ ମୁଁ ଅନ୍ୟ କୁଆଡ଼େ

ଯାଇନାହିଁ । ଆସାମ ଛଡ଼ା ଭାରତର ଅନ୍ୟ କେଉଁ ସ୍ଥାନରେ ପେଟ୍ରୋଲିଅମ ମିଳେ ଏବଂ ଭବିଷ୍ୟତରେ ମିଳିବାର ସମ୍ଭାବନା ରହିଛି, ସେ ବିଷୟ ଶୁଣିଲେ ବଡ଼ କୃତଜ୍ଞ ହୁଅନ୍ତି ।”

ଅଫିସର୍—“ବେଶ୍ ଭଲ ପ୍ରଶ୍ନଟିଏ ପଚାରିଛନ୍ତି ଆପଣ । ଆପଣ ତ ଆସାମରେ ଦେଖିଛନ୍ତି, ସେଠାରେ ମାଟିତଳୁ କ ପରିମାଣରେ ପେଟ୍ରୋଲିଅମ, କିରାସିନ ତେଲ ବାହାରୁଛି । କହିବାକୁ ଗଲେ ପେଟ୍ରୋଲିଅମଦୃଷ୍ଟିରୁ ଆସାମପରି ଅଞ୍ଚଳ ଭାରତରେ ଆଉ ନାହିଁ । ଅନେକ ଦିନ ହେଲାଣି, ଆମେ ଆସାମରୁ ହିଁ ପେଟ୍ରୋଲିଅମ ପାଇ ଆସୁଅଛୁ । ତେବେ ନିକଟରେ ଗୁଜୁରାଟ ପ୍ରଦେଶରେ ପେଟ୍ରୋଲିଅମ ମିଳୁଥିବା ଅଞ୍ଚଳ ଆବିଷ୍କୃତ ହୋଇଛି । ଗୁଜୁରାଟ ପ୍ରଦେଶର ଆଙ୍କଲେଶ୍ୱର, ବମ୍ବେ, କାଲଲ୍ ବାଦ୍‌ସର୍ ପ୍ରଭୃତି ଅଞ୍ଚଳରେ ଖଣିଜ ତୈଳ ଓ ପ୍ରାକୃତିକ ବାଷ୍ପ ରହିଛି ବୋଲି ଜଣାପଡ଼ୁଛି । ଆଙ୍କଲେଶ୍ୱର ନିକଟରେ ଖନନ କରାଯାଇଥିବା ପ୍ରଥମ କୂପରେ ହିଁ ଅତି ଉତ୍କୃଷ୍ଟ ଧରଣ ତୈଳର ସନ୍ଧାନ ମିଳିଛି । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁ ଆଙ୍କଲେଶ୍ୱରର ଏହି ପ୍ରଥମ ତୈଳକୂପକୁ ‘ବସୁଧାରା’ ନାମରେ ନାମିତ କରିଛନ୍ତି । ବରୋଦା ନିକଟବର୍ତ୍ତୀ ମହୁବେଜ୍, ଘୋଘା ଏବଂ ବାଦସର୍ ପ୍ରଭୃତି ସ୍ଥାନମାନଙ୍କରେ ମାଟିତଳେ ପ୍ରାକୃତିକ ବାଷ୍ପ ପ୍ରଚୁର ପରିମାଣରେ ରହିଥିବାର ଜଣାଯାଇଛି । ଖଣିଜ ତୈଳ ସଙ୍ଗେ ଏହି ପ୍ରାକୃତିକ ବାଷ୍ପ ମିଶି ରହିଥାଏ । ଶିଳ୍ପକ୍ଷେତ୍ରରେ ପ୍ରାକୃତିକ ବାଷ୍ପର ମଧ୍ୟ ବହୁ ଉପଯୋଗିତା ରହିଛି । ଏହିସବୁ ଅଞ୍ଚଳର ତୈଳ-ସମ୍ପଦର ସଠିକ୍ ଅବସ୍ଥା ଜଣା ନ ପଡ଼ିଥିଲେ ମଧ୍ୟ ଏହି ଅଞ୍ଚଳରେ ଆହୁରି ଅଧିକ ତୈଳକୂପର ସନ୍ଧାନ ମିଳିବା ସମ୍ଭବ ବୋଲି ବୈଜ୍ଞାନିକ-ମାନେ ମତ ଦେଉଛନ୍ତି । ପୂର୍ବରେ ଆସାମପରି ପଶ୍ଚିମ ଉପକୂଳରେ ଗୁଜୁରାଟ ମଧ୍ୟ ନିକଟ ଭବିଷ୍ୟତରେ ଏକ ସମୃଦ୍ଧିଶାଳୀ ତୈଳ-ଶିଳ୍ପାଞ୍ଚଳ-ରୂପେ ଗଢ଼ିଉଠିବାର ଉଜ୍ଜ୍ୱଳ ଆଶା ଦେଖାଯାଉଛି । ଗୁଜୁରାଟର ଏହି ଅଞ୍ଚଳରେ ଭୂଗର୍ଭରେ ପ୍ରାୟ ୩୦ ନିୟୁତ ଟନ ଖଣିଜ ତୈଳ ରହିଛି ବୋଲି ଅନୁସନ୍ଧାନରୁ ଜଣାପଡ଼ୁଛି ଏବଂ ବର୍ଷକୁ ପ୍ରାୟ ୨ ନିୟୁତ ଟନ୍ ପେଟ୍ରୋଲିଅମ ଏଠାରୁ ମିଳିପାରିବ । ଆସାମର ନହରକଟିଆ, ମେରାନ୍ ଏବଂ ହୁଗ୍ରିଜନ୍ ଅଞ୍ଚଳରେ ମଧ୍ୟ ଖଣିଜ ତୈଳ ସହିତ ପ୍ରାକୃତିକ ବାଷ୍ପ

ବହୁତ ପରିମାଣରେ ରହିଛି । ପୂର୍ବ-ପଞ୍ଜାବର ଜ୍ୱାଳାମୁଖୀଠାରେ ମଧ୍ୟ ପ୍ରାକୃତିକ ବାଷ୍ପ ରହିଥିବାର ଜଣାଯାଇଛି । ଜ୍ୱାଳାମୁଖୀ ଏବଂ ହୋସିଆର୍‌ପୁର ଅଞ୍ଚଳରେ ଅନୁସନ୍ଧାନ କାର୍ଯ୍ୟ ଚାଲିଛି ।

ରାଜସ୍ଥାନ ମରୁଭୂମିର ଜଇସାଲ୍‌ମିର୍‌ଠାରେ ମଧ୍ୟ ତୈଳ ଅନୁସନ୍ଧାନ କରାଯାଉଛି । କେତେକ ନିର୍ଦ୍ଦିଷ୍ଟ ଜାତୀୟ ସାମୁଦ୍ରିକ ସ୍ତରୀକୃତ ଶିଳାରେ ପେଟ୍ରୋଲିଅମ ଆବଦ୍ଧ ହୋଇ ଭୂଗର୍ଭରେ ରହିଥାଏ । ଏହିସବୁ ଅଞ୍ଚଳଗୁଡ଼ିକ ଭୂତତ୍ତ୍ୱବିତ୍ ଏବଂ ଭୂପଦାର୍ଥ-ବିଜ୍ଞାନବିତ୍‌ମାନେ ଅନୁସନ୍ଧାନ କରି ପେଟ୍ରୋଲିଅମ ମିଳିବାର ସମ୍ଭାବନା ବିଷୟରେ ସୂଚନା ଦେଇଥାଆନ୍ତି । ଭୂତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ, ସମଗ୍ର ହିମାଳୟ ପର୍ବତମାଳାର ପାଦଦେଶରେ ପୂର୍ବଦିଗରେ ଦାର୍ଜିଲିଂ ଓ ଆସାମ ସୀମାନ୍ତ ପର୍ଯ୍ୟନ୍ତ ଅଞ୍ଚଳ, ଭାରତର ପୂର୍ବ ଓ ପଶ୍ଚିମ ଉପକୂଳବର୍ତ୍ତୀ କେତେକ ଅଞ୍ଚଳ, ସିନ୍ଧୁ-ଗାଙ୍ଗେୟ ସମତଳଭୂମି, କାବେରୀ ନଦୀର ତ୍ରିକୋଣଭୂମି ଅଞ୍ଚଳ ଖଣିଜ ତୈଳର ଅନୁସନ୍ଧାନ ନିମନ୍ତେ ଉପଯୁକ୍ତ । ଏସବୁ ଅଞ୍ଚଳରେ ବ୍ୟାପକ ଅନୁସନ୍ଧାନ ହେବାର ପରିକଳ୍ପନା ରହିଛି । କେବଳ ପ୍ରାଥମିକ ଅନୁସନ୍ଧାନରୁ ଖଣିଜ ତୈଳର ସ୍ଥିତି ସମ୍ବନ୍ଧରେ ଉଜ୍ଜ୍ୱଳ ଆଶା ଦେଖାଯାଉ ନ ଥିଲେ ମଧ୍ୟ ସେଥିରେ ହତାଶ ହେବାର ନୁହେ । ହୁଏତ ଭୂଗର୍ଭରେ ବହୁତ ଗଭୀର ସ୍ଥାନରେ ପେଟ୍ରୋଲିଅମ୍ ଥାଇପାରେ; ତେଣୁ ଧୈର୍ଯ୍ୟ ଧରି ଅନୁସନ୍ଧାନ ନିମିତ୍ତ ଅନେକ କୂପ ଖନନରେ ବହୁତ ଟଙ୍କା ଖର୍ଚ୍ଚ ହୋଇଯାଏ; କିନ୍ତୁ ଟୋପାଏ ତେଲ୍ ମିଳେ ନାହିଁ । ପୁଣି ଏପରି ଗୋଟିଏ ଗୋଟିଏ ସ୍ଥାନ ଆସେ, ଯେଉଁଠାରେ କି କୂପ ଖନନ ମାତ୍ରକେ ଭୂଗର୍ଭରୁ ଖଣିଜ ତୈଳର ଉତ୍ସ ଖୋଲେ ଏବଂ ସେହିଠାରେ ସମସ୍ତ କ୍ଷତିପୂରଣ ହୋଇ କୋଟି କୋଟି ଟଙ୍କା ଲାଭ ହୋଇଥାଏ । ଖଣିଜ ତୈଳର ଅନୁସନ୍ଧାନ ବଡ଼ ବ୍ୟୟ ଓ ଆୟାସସାଧ୍ୟ—ବହୁତ ମୂଳଧନ ଏଥିନିମନ୍ତେ ଦରକାର । ଏ ଅନୁସନ୍ଧାନ ଠିକ୍ ଜୁଆଖେଳପରି । ବେଳେବେଳେ ଅନୁସନ୍ଧାନ ଫେଲ ମାରିଲେ କୋଟି କୋଟି ଟଙ୍କା କମ୍ପାନୀମାନେ ହରାଇବସନ୍ତି । ପୁଣି ଏପରି ସମୟ ଆସେ, ଯେତେବେଳେ କି ଗୋଟିଏ ଗୋଟିଏ ତୈଳକୂପରୁ ଅଜସ୍ର ଅର୍ଥ ଲାଭ ହୋଇପାରେ ।"

ବୃନ୍ଦାବନ —"ଓଡ଼ିଶାରେ ତ ପେଟ୍ରୋଲିଅମ୍ ଏପର୍ଯ୍ୟନ୍ତ କୌଣସି-ଠାରେ ମିଳିନାହିଁ । ତେବେ ଆମେ ମଝିରେ ମଝିରେ ଶୁଣିବାକୁ ପାଉ ଯେ, ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର କେତେକ ସ୍ଥାନରେ ମାଟିରୁ କିରାସିନି ତେଲର ଗନ୍ଧ ବାହାରୁଛି । କୂଅ ଖୋଳିଲାବେଳେ ମଧ୍ୟ କୂଅ ଭିତରୁ କିରାସିନି ତେଲର ଗନ୍ଧ ବାହାରିବାର ଖବର ଲୋକମାନଙ୍କଠାରୁ ଶୁଣା-ଯାଇଥାଏ । ତେବେ କ'ଣ ଏ ଅଞ୍ଚଳରେ ପେଟ୍ରୋଲିଅମ୍ ବାହାରିବାର ସମ୍ଭାବନା କିଛି ଅଛି ?"

ଅଫିସର—"ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳର ବିସ୍ତୀର୍ଣ୍ଣ ବାଲୁକା-ଭୂମିତଳେ ସାମୁଦ୍ରିକ ଶିଳାସ୍ତର ଥିବାର ଜଣାଯାଉଛି ଏବଂ ଏମାନଙ୍କରେ ପେଟ୍ରୋଲିଅମ୍ ମିଳିବାର ସମ୍ଭାବନା ଅଛି । ତେବେ ଏସବୁ ଅଞ୍ଚଳରେ ବିଶେଷ ପରୀକ୍ଷା କରାଯାଇ ନାହିଁ । ଭବିଷ୍ୟତରେ ବାରିପଦା ନିକଟରେ ଏବଂ ବାଲେଶ୍ୱର ଜିଲ୍ଲାର ଉପକୂଳ ଅଞ୍ଚଳରେ ପରୀକ୍ଷାମୂଳକଭାବରେ ଡ୍ରିଲିଂ ବା ଖନନ କରାଗଲେ ବିଶେଷ ତଥ୍ୟ ମିଳିପାରିବ ।"

ବୃନ୍ଦାବନ—"ଭାରତରେ ପେଟ୍ରୋଲିଅମ୍ ଅନୁସନ୍ଧାନ ପାଇଁ କି ବ୍ୟବସ୍ଥା ହୋଇଅଛି ?"

ଅଫିସର :—"ପେଟ୍ରୋଲିଅମ୍ ଉତ୍ପାଦନରେ ଆମେ ଏପର୍ଯ୍ୟନ୍ତ ସ୍ୱାବଲମ୍ବୀ ହୋଇପାରିନାହୁଁ; ବିଦେଶରୁ ଆମଦାନୀ ଉପରେ ଆମକୁ ନିର୍ଭର କରିବାକୁ ପଡ଼ୁଛି । ଏହାଫଳରେ ଆମର ବୈଦେଶିକ ମୁଦ୍ରା ବିନିମୟ ସମ୍ବଳ କମିଯାଉଛି । ତେଣୁ ଆମକୁ ଏ ଦିଗରେ ସ୍ୱାବଲମ୍ବୀ ହେବା ନିମନ୍ତେ ଚେଷ୍ଟା କରିବାକୁ ପଡ଼ିବ । ଦେଶରକ୍ଷା ଓ ଶିଳ୍ପପ୍ରସାର ନିମନ୍ତେ ପ୍ରଚୁର ପେଟ୍ରୋଲିଅମ୍ ଏବଂ ଏହାର ଉପଜାତ ଦ୍ରବ୍ୟ ଦରକାର । ଆମର ଏସବୁ ଜିନିଷର ଆବଶ୍ୟକତା ବୃଦ୍ଧି ପାଇବାରେ ଲାଗିଛି । ତୃତୀୟ ପଞ୍ଚବାର୍ଷିକ ଯୋଜନା ଶେଷସୁଦ୍ଧା ଖଣିଜ ତେଲ ଉତ୍ପାଦନ ୧୪ ନିୟୁତ ଟନ୍ ଧାର୍ଯ୍ୟ କରାଯାଇଛି ଏବଂ ଏହା ଚତୁର୍ଥ ପଞ୍ଚବାର୍ଷିକ ଯୋଜନାବେଳକୁ ବଢ଼ି ୨୫ ନିୟୁତ ଟନ୍ ହେବ । ଭାରତରେ ଖଣିଜ ତୈଳ ଓ ପ୍ରାକୃତିକ ବାଷ୍ପ ଅନୁସନ୍ଧାନ କାମ ଏକ ସରକାରୀ ଅନୁଷ୍ଠାନଦ୍ୱାରା ପରିଚାଳିତ ହେଉଛି । ଏହାର ନାଁ ହେଉଛି 'ତୈଳ ଏବଂ ପ୍ରାକୃତିକ ବାଷ୍ପ କମିଶନ୍' । ଏହାଛଡ଼ା କେତେକ ଘରୋଇ କମ୍ପାନୀମାନେ ମଧ୍ୟ ଖଣିଜ ତୈଳ

ଅନୁସନ୍ଧାନ କରୁଛନ୍ତି । ତେବେ ଖଣିଜତୈଳ ଅନୁସନ୍ଧାନରେ ବିଶେଷ ବୈଜ୍ଞାନିକ କୌଶଳ ଦରକାର ପଡ଼ୁଥିବାରୁ ଏବଂ ଖର୍ଚ୍ଚ ପଡ଼ୁଥିବାରୁ ଆମେ ବିଦେଶୀ ରାଷ୍ଟ୍ରମାନଙ୍କର ସାହାଯ୍ୟ ନେଉଛୁ । ସୋଭିଏତ ବୈଜ୍ଞାନିକମାନେ ଆମକୁ ବିଶେଷ ସାହାଯ୍ୟ କରୁଛନ୍ତି । ଏହାଛଡ଼ା ରୁମାନିଆ ବୈଜ୍ଞାନିକମାନଙ୍କର ସାହାଯ୍ୟ ମଧ୍ୟ ଆମେ ପାଉଛୁ । ଯୁକ୍ତରାଷ୍ଟ୍ର ଆମେରିକା ପ୍ରଭୃତି ଉନ୍ନତ ଦେଶମାନଙ୍କର ବିଶେଷଜ୍ଞମାନଙ୍କର ପରାମର୍ଶ ମଧ୍ୟ ଆବଶ୍ୟକ ସ୍ଥଳେ ନିଆଯାଉଛି । "ଅଏଲ ଇଣ୍ଡିଆ କମ୍ପାନୀ" ନାମକ ଏକ ମିଳିତ ସରକାରୀ ଏବଂ ବେସରକାରୀ କମ୍ପାନୀ ମାଧ୍ୟମରେ ନହର-କଟିଆ ଏବଂ ମୋରନ୍ ଅଞ୍ଚଳରେ ଅନୁସନ୍ଧାନ ଚାଲିଛି । ଭାରତ ସରକାର କେତେକ ବିଖ୍ୟାତ ଘରୋଇ କମ୍ପାନୀମାନଙ୍କ ସହିତ ସହଯୋଗ ରଖି ତୈଳ ଅନୁସନ୍ଧାନ କରିବା ସ୍ଥିର କରିଛନ୍ତି । ପେଟ୍ରୋଲିଅମ ଶିଳ୍ପର ବିକାଶ ନିମନ୍ତେ ବହୁ ଅର୍ଥ ଲୋଡ଼ା—ଖଣିଜ ତୈଳର ଅନୁସନ୍ଧାନ, କୂପ ଖନନ, ଉତ୍ପାଦନ, ଶୋଧନ ଏବଂ ଉପଜାତ ଦ୍ରବ୍ୟର ବଜାର ନିୟନ୍ତ୍ରଣ କରିବାରେ ବହୁତ ପଇସା ଖର୍ଚ୍ଚ ହୁଏ । ତେଣୁ ଖଣିଜ ତୈଳ ଶିଳ୍ପର ବିକାଶ ନିମନ୍ତେ ଏକ ସୁଚିନ୍ତିତ ଯୋଜନା ଏକାନ୍ତ ଆବଶ୍ୟକ । ନିକୃଷ୍ଟ ଧରଣର କୋଇଲାରୁ ପେଟ୍ରୋଲିଅମ୍ କାଢ଼ିବା ବିଷୟ ବର୍ତ୍ତମାନ ବିଶେଷଜ୍ଞମାନେ ଚିନ୍ତା କରୁଛନ୍ତି ।

ଖଣିଜ ତୈଳ ପ୍ରାକୃତିକ ଅବସ୍ଥାରେ ବଡ଼ ଅପରିଷ୍କୃତ ଥାଏ; ତେଣୁ ଏହାକୁ ଶୋଧନ କରିବା ଆବଶ୍ୟକ ହୁଏ । ଏହି ଶୋଧନ ଫଳରେ ବହୁତ ମୂଲ୍ୟବାନ ଉପଜାତ ଦ୍ରବ୍ୟ ଖଣିଜ ତୈଳରୁ ମିଳିଥାଏ । ଭୂଗର୍ଭରୁ ମିଳୁଥିବା ଅପରିଷ୍କୃତ ପେଟ୍ରୋଲିଅମ୍ ବା ଖଣିଜ ତୈଳକୁ ବୈଜ୍ଞାନିକ ଉପାୟରେ ଶୋଧନ କରିବା ପାଇଁ କେତୋଟି କାରଖାନା ପ୍ରତିଷ୍ଠିତ ହୋଇଛି ।

"ଆଜିର ଯନ୍ତ୍ର-ଯୁଗରେ ପେଟ୍ରୋଲିଅମ୍‌ର ବହୁଳ ବ୍ୟବହାର ଥିବାରୁ ଏହାର ଅନୁସନ୍ଧାନ ନିମନ୍ତେ ଆମକୁ ବହୁତ ପରିଶ୍ରମ କରିବାକୁ ପଡ଼ିବ ।"

ବୃନ୍ଦାବନ—"ପେଟ୍ରୋଲିଅମ୍‌ର ଶୋଧନ ଫଳରେ ଆଉ କି କି ଜିନିଷ ବାହାରେ ଆଜ୍ଞା !"

ଅଫିସର—"ପେଟ୍ରୋଲିଅମ୍‌ର ଶୋଧନ ଫଳରେ ବହୁତ ଦରକାରୀ ପଦାର୍ଥ ବାହାରିଥାଏ । କିରାସିନି ତେଲ ତ ଆପଣଙ୍କ ଘରେ

ଲଣ୍ଠନ, ଡ଼ିବି, ପେଟ୍ରୋମେକ୍ସ, ଷ୍ଟୋଭ୍ ପ୍ରଭୃତି ଜାଳିବା ପାଇଁ ନ ହେଲେ ନ ଚଳେ । ଏହି ଶୋଧନ ଫଳରେ କିରାସିନ ତେଲ ବାହାରିଥାଏ । ଏହାଛଡ଼ା ପେଟ୍ରୋଲ ବା ମୋଟର ତେଲ ବାହାରିଥାଏ; ଯାହା କି ମୋଟରଗାଡ଼ି, ଉଡ଼ାଜାହାଜ ଏବଂ ନାନା ଯନ୍ତ୍ରପାତି ଚଳାଚଳରେ ବ୍ୟବହୃତ ହୁଏ । ଲୁବ୍ରିକେଟିଂ ବା ଘର୍ଷଣହ୍ରାସକ ତେଲ ବିଭିନ୍ନ ଯନ୍ତ୍ରପାତି, କଳକବ୍‌ଜା ଓ ମୋଟରଗାଡ଼ି ଆଦିରେ ଦିଆଯାଏ ଏବଂ ଏହାକୁ ଦେଲେ ସେଗୁଡ଼ିକ ଭଲରୂପେ ଚଳେ । ଡ଼ିଜେଲ ତେଲ ଷ୍ଟିମ ଧାନକଳ, କଉତକଳ ଆଦି ଚଳାଇବାରେ ସାହାଯ୍ୟ କରେ । ଏହା ସାହାଯ୍ୟରେ ଆଜକାଲି ମୋଟର, ରେଳଇଞ୍ଜିନ, ଟ୍ରାକ୍ଟର ଆଦି ଚାଲୁଅଛି । ଧଳାତେଲ ବିଭିନ୍ନ ଶସ୍ତା ବାସନା ତେଲ ତିଆରରେ ବ୍ୟବହୃତ ହୁଏ । ଭେସ୍‌ଲିନ୍ ଦ୍ୱାରା ବିଭିନ୍ନ ପ୍ରକାରର ଔଷଧ, କ୍ରିମ୍ ପ୍ରଭୃତି ତିଆରି କରାଯାଇଥାଏ । ପାରାଫିନ୍ ମହମକୁ ମହମବତୀ ତିଆରି କରିବାରେ ଲଗାଯାଇଥାଏ । ପେଟ୍ରୋଲିଅମ୍‌ର ଶୋଧନ ଫଳରେ ଆଲ୍‌କାତରା ମଧ୍ୟ ବାହାରିଥାଏ । ଏହାକୁ କାଠ ପ୍ରଭୃତିରେ ଲଗାଯାଇଥାଏ । ଏହି ଆଲ୍‌କାତରାକୁ ଆହୁରି ଶୋଧନ କଲେ ସେଥିରୁ ପିଚ୍ ବୋଲି ଏକ କଳମା ପଦାର୍ଥ ବାହାରେ । ରାସ୍ତା ତିଆରି କରିବାରେ ଏହି ପିଚ୍ ବ୍ୟବହୃତ ହୋଇଥାଏ । ଶୋଧନ ଫଳରେ ଧଳାତେଲ ମଧ୍ୟ ବାହାରିଥାଏ । ଏହାର କୌଣସି ଗନ୍ଧ, ବର୍ଣ୍ଣ ବା ସ୍ୱାଦ ନାହିଁ । ବିଭିନ୍ନ ପ୍ରକାରର ବାସନାତେଲ ତିଆରି କରିବାରେ ଏହା ବ୍ୟବହୃତ ହୋଇଥାଏ । ଆଜି ମଧ୍ୟ ବାହାରୁଥିବା ବେନ୍‌ଜାଇନ୍‌କୁ ଗରମ ପୋଷାକ ଇତ୍ୟାଦିକୁ ଶୁଖିଲା-ସଫା କରାଯାଇଥାଏ । ପେଟ୍ରୋଲିଅମ୍ ଆଜିକାଲିର ସଭ୍ୟତା ନିମନ୍ତେ ଏତେ ଆବଶ୍ୟକ ଏବଂ ମୂଲ୍ୟବାନ୍ ଯେ, ଏହାକୁ ସେଥିନିମନ୍ତେ 'ତରଳସୁନା' ବୋଲି କୁହାଯାଇଥାଏ ।"

ପାଣ୍ଡୁ—"ହଜୁର୍, ଯେଉଁ ତୈଳକୂପ କଥା କହିଲେ, ତାହା କ'ଣ ଆମର ଏଇ କୂଅ ପରି । ଆମେ କୂଅ ଖୋଳି ଯେମିତି ପାଣି ବାହାର କରୁଛୁ, କିରାସିନ ତେଲକୁ କ'ଣ ମାଟି ଭିତରୁ ସେମିତି ବାହାର କରାଯାଏ କି ?"

ପାଣ୍ଡୁର ପ୍ରଶ୍ନରେ ସାମନା ଧାଡ଼ିରେ ବସିଥିବା ଲୋକମାନେ ହସି ଉଠିଲେ ।

ଅଫିସର—"ଆପଣ ବୋଧହୁଏ ଭାବୁଛନ୍ତି ଯେ କୂଅରେ ଆମେ ଯେମିତ ବାଲ୍‌ଟି ପକାଇ ପାଣି ଆଣୁ, ପେଟ୍ରୋଲିଅମକୁ ସେହିପରି କୂଅ ଖୋଳି ବାଲ୍‌ଟି ପକାଇ ଆଣୁ । ତାହା ନୁହେଁ । ପେଟ୍ରୋଲିଅମ୍ ସେମିତ ବାହାର କରାଯାଇପାରେ ନା । ଏହା ଏତେ ଗଭୀର ଅଞ୍ଚଳରେ ଥାଏ ଯେ ବହୁତ ଲମ୍ବା ପାଇପ୍ ଭୂଗର୍ଭକୁ ପ୍ରବେଶ କରାଇ ଯନ୍ତ୍ର ସାହାଯ୍ୟରେ ପମ୍ପ କରାଇ ଏହା ବାହାରକୁ କଢ଼ାଯାଏ । ଏହି ଯେଉଁ ସ୍ଥାନରୁ ପେଟ୍ରୋଲିଅମ୍ ବାହାର କରାଯାଏ, ତାହାକୁହିଁ କୁହାଯାଏ ତୈଳକୂପ—ଆଶା କରୁଛି, ମୁଁ ଯାହା କହିଲି, ଆପଣ ତାହା ଏଥର ବୁଝିପାରିଲେ ।" ଏଇଠାରେ ଆପଣମାନଙ୍କୁ ମୁଁ ଆଉ ଗୋଟିଏ ଖଣିଜ କଥା କହିବି, ଯାହାକି ଖଣିଜ ତେଲ ପାଇଁ କୂପଖନନ କରିବାରେ ବ୍ୟବହୃତ ହୋଇଥାଏ । ଏହାର ନାଁ ହେଉଛି ବାରାଇଟସ—ଆନ୍ଧ୍ରପ୍ରଦେଶର କଡ଼ାପା, ଅନନ୍ତପୁର ଏବଂ କର୍ଣ୍ଣୁଲ ଜିଲ୍ଲା ଏବଂ ରାଜସ୍ଥାନର ଆଲ୍‌ୱାର ଜିଲ୍ଲାରେ ବାରାଇଟ୍‌ସ ଖଣିଜ ଖୋଳାଯାଇଛି । ଆମର ନିଜ ଦେଶର ଚାହିଦା ପୂରଣ କରି ପାକସ୍ଥାନ, ଇରାନ୍ ଓ ଇରାକ୍, ବର୍ମା ଏବଂ ଜାପାନକୁ ମଧ୍ୟ ବାରାଇଟ୍‌ସ ରପ୍ତାନି ହୋଇ ପାରୁଛି । କେତେକ ରଙ୍ଗ, ରସାୟନିକ ଦ୍ରବ୍ୟ ଏବଂ ବେରିଅମ୍ ଧାତୁ ଉତ୍ପାଦନରେ ଏହା ମଧ୍ୟ ବ୍ୟବହୃତ ହୋଇଥାଏ ।"

ଡାକ୍ତର ମଦନବାବୁ ପ୍ରଶ୍ନ କଲେ, "କୋଇଲା ଏବଂ ପେଟ୍ରୋଲିଅମ୍ ଯେପରି ଶକ୍ତି-ଉତ୍ପାଦକ ଖଣିଜ, ସେହିପରି ଆଣବିକଶକ୍ତି ଉତ୍ପାଦନ ପାଇଁ କ'ଣ କିଛି ଖଣିଜ ଅଛି ?"

"ଆଣବିକ ଶକ୍ତି ଉତ୍ପାଦନ ପାଇଁ ପ୍ରଧାନତଃ ଇଉରାନିଅମ୍ ଏବଂ ଥୋରିଅମ୍ ମୌଳିକ ପଦାର୍ଥକୁ ନେଇ ଗଠିତ ହୋଇଥିବା ଖଣିଜ ବ୍ୟବହୃତ ହୋଇଥାଏ । ଇଉରାନିଅମ୍‌ଯୁକ୍ତ ତେଜସ୍କ୍ରିୟ ବା ଆଣବିକଶକ୍ତି ଉତ୍ପାଦକ ଖଣିଜ ବିହାରର ସିଂହଭୂମ୍ ଜିଲ୍ଲାର ଜାଦୁଗୋଡ଼ା ଏବଂ ରାଜସ୍ଥାନର ଉମ୍ରା ଅଞ୍ଚଳରେ ମିଳୁଛି ଏବଂ ଥୋରିଅମ୍‌ଯୁକ୍ତ ଖଣିଜ କେରଳର ସମୁଦ୍ରକୂଳ ବାଲିରୁ ମିଳିଥାଏ । ଏହାଛଡ଼ା ପଶ୍ଚିମ ଏବଂ ପୂର୍ବ-ଉପକୂଳର ଅନେକ ସ୍ଥାନରେ ମଧ୍ୟ ଏହି ଖଣିଜ ଥିବାର ଦେଖାଯାଏ । ଭାରତ ସରକାରଙ୍କର ଆଣବିକଶକ୍ତି ସଂସ୍ଥାଦ୍ୱାରା ଏହି ଖଣିର ଅନୁସନ୍ଧାନ ଚାଲିଛି—ଏହି ଆଣବିକ ଶକ୍ତିକୁ ଦେଶହିତକର କାର୍ଯ୍ୟରେ ଲଗାଇବା

ଭାରତ ସରକାରଙ୍କର ଲକ୍ଷ୍ୟ ।" ଅଫିସର ମଦନବାବୁଙ୍କର ପ୍ରଶ୍ନର ଉତ୍ତର ଦେଇ ବସୁ ବସୁ ପୁଣି ପ୍ରଶ୍ନ ହେବାର ଶୁଣି ଉଠି ଠିଆହେଲେ ।

ହାଇସ୍କୁଲ ଛାତ୍ର ଶରତ ପ୍ରଶ୍ନ କଲେ, "ସାର୍ ! ତମ୍ବା ଓ ସୀସା ଧାତୁର ଖଣିଜ ଆମ ଦେଶରେ କି ପରିମାଣରେ ମିଳେ ?"

ଅଫିସର—"ଲୁହା, ମାଙ୍ଗାନିଜ, କ୍ରୋମିଅମ୍, ଆଲୁମିନିଅମ୍ ପ୍ରଭୃତି ଧାତୁର ଖଣିଜ ଆମ ଦେଶରେ ଯେପରି ପ୍ରଚୁର ପରିମାଣରେ ମିଳେ, ସେହିପରି ଭାବରେ ତମ୍ବା, ସୀସା, ଦସ୍ତା, ଟିଣ ପ୍ରଭୃତି ଖଣିଜ ମିଳେ ନାହିଁ ଏବଂ ଏଥିନିମନ୍ତେ ଆମକୁ ବିଦେଶର ଆମଦାନି ଉପରେ ନିର୍ଭର କରିବାକୁ ପଡ଼ୁଛି । ଏହି ଧାତୁର ଖଣିଜର ଅନୁସନ୍ଧାନ ଉଭବା ଦିଗରେ ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷା ବିଶେଷ ବ୍ୟବସ୍ଥା କରିଛନ୍ତି ଏବଂ ଏହା ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି; କାରଣ ଏହାର ବହୁତ ବ୍ୟବହାର ରହିଛି ।"

ଶରତ—"ଏହାର ବ୍ୟବହାର ସମ୍ବନ୍ଧରେ କିଛି ସୂଚନା ଦେଇ ପାରିବେ କି ?"

ଅଫିସର—"ବିଦ୍ୟୁତ୍-ଶିଳ୍ପରେ ତମ୍ବାର ବ୍ୟବହାର ଅଧିକ ହୋଇଥାଏ । ଏ ଯେଉଁ ଇଲେକ୍‌ଟ୍ରିକ୍ ତାର ଖୁଣ୍ଟକୁ ଖୁଣ୍ଟ ବନ୍ଧା ହୋଇ ଯାଇଥିବାର ଆପଣ ଦେଖନ୍ତି କମ୍ବା ଟେଲିଫୋନ୍ ବା ଟେଲିଗ୍ରାଫ୍ ତାର ଦେଖନ୍ତି, ସେଗୁଡ଼ିକ ତିଆରି କରିବା ପାଇଁ ତମ୍ବାହିଁ ଆବଶ୍ୟକ ହୁଏ । ତମ୍ବା ଓ ଦସ୍ତା ମିଶି ପିତ୍ତଳ ତିଆରି ହୁଏ । ପିତ୍ତଳର ବାସନକୁସନ ଆମର ନିତ୍ୟବ୍ୟବହାର୍ଯ୍ୟ ବସ୍ତୁ । ଟିଣ ଓ ତମ୍ବା ମିଶି ବ୍ରଞ୍ଜ ନାମକ ଏକ ଧାତୁ ତିଆରି ହୋଇଥାଏ । ମୂର୍ତ୍ତି ତିଆରି କରିବା ପାଇଁ ବ୍ରଞ୍ଜ ଏକ ଉତ୍କୃଷ୍ଟ ଧାତୁ । ତମ୍ବା ଓ ଆଲୁମିନିଅମର ସମ୍ମିଶ୍ରଣ, ଯାହାକୁ କି 'ଡୁରାଲୁମିନ୍' ବୋଲି କୁହାଯାଏ, ତାହା ଉଡ଼ାଜାହାଜର ବିଭିନ୍ନ ଅଂଶ ତିଆରି କରିବାରେ ବ୍ୟବହୃତ ହୋଇଥାଏ । ତମ୍ବା, ଦସ୍ତା, ଟିଣ ଓ ନିକେଲ ପ୍ରଭୃତିର ବିଭିନ୍ନ ସମ୍ମିଶ୍ରଣ ଟଙ୍କାପଇସା ତିଆରି କରିବାରେ ଲଗା-ଯାଇଥାଏ । ଟେବୁଲ ଓ ଘର ସଜାଇବା ପାଇଁ ବିଭିନ୍ନ ପ୍ରକାରର ଫୁଲଦାନି, କୁଣ୍ଡ ପ୍ରଭୃତି ସୌଖିନ୍ ଜିନିଷ ତିଆରି କରିବାରେ ମଧ୍ୟ ଏହାକୁ ବ୍ୟବହାର କରାଯାଏ । ନର୍ଦ୍ଦମାର ଅପରିଷ୍କୃତ ଜଳ ପ୍ରଭୃତି ବୋହିବାକୁ ଥିବା ନଳ,

ବିଦ୍ୟୁତ୍ ବ୍ୟାଟେରି, ଟାଇପ୍ ମେସିନ୍‌ର ଅକ୍ଷର, ବନ୍ଧୁକର ଗୁଳି, ବିଭିନ୍ନ ରଙ୍ଗ ଏବଂ ରବର ଶିଳ୍ପରେ ସୀସାର ବ୍ୟବହାର ଦେଖାଯାଏ । ଏହାଛଡ଼ା ସୀସାର ଆଉ ଗୋଟିଏ ବିଶେଷ ବ୍ୟବହାର ହେଉଛି ଯେ ବିଦ୍ୟୁତ୍ ଏବଂ ଟେଲିଫୋନ୍ ତାରକୁ ଘୋଡ଼ାଇ ରଖୁଥିବା କେସିଂ ତିଆରି କରିବାରେ ଏହାକୁ ଲଗାଯାଇଥାଏ । ସେହିପରି ଦସ୍ତାର ମଧ୍ୟ ଅନେକ ବ୍ୟବହାର ରହିଛି । ଲୁହା ଚଦର ଉପରେ ଦସ୍ତାର ଏକ ପରସ୍ତ ଦିଆଯାଇ ଲୁହାକୁ କଳଙ୍କି ଲାଗିବାରୁ ରକ୍ଷା କରାଯାଇଥାଏ । ଏହାକୁ ଆମେ କହୁ ଗାଲ୍‌ଭାନାଇଜଡ୍ ଲୁହା ଚଦର । ଘରର ଛାତ ଏବଂ କାନ୍ଥ ପ୍ରଭୃତି ତିଆରି କରିବାରେ ଏହା ବ୍ୟବହୃତ ହୋଇଥାଏ । ଜର୍ମାନ୍ ସିଲ୍‌ଭର୍‌ର ଯେଉଁ ବାସନ ଆମେ ବାହାର କରୁ, ତାକୁ ମଧ୍ୟ ତିଆରି କରିବାରେ ଦସ୍ତା ଆବଶ୍ୟକ ହୋଇଥାଏ । ମୂର୍ତ୍ତିରେ ଦିଆଯାଇଥିବା ରଙ୍ଗ, ଔଷଧ, ରସାୟନିକ ପରୀକ୍ଷାଗାରରେ ମଧ୍ୟ ଦସ୍ତାର ଆବଶ୍ୟକତା ରହିଛି । ଏହିସବୁ ଧାତୁର ଏତେ ବ୍ୟବହାର ଥିବା ସତ୍ତ୍ୱେ ଆମ ଦେଶରେ ଏସବୁ ଧାତୁର ଖଣିଜ ଦୃଷ୍ଟିରୁ ପ୍ରକୃତି ଆମକୁ ନିରାଶ କରିଛି ।”

ଶରତ୍—“ଭାରତର କେଉଁ ଜାଗାରେ ଏସବୁ ଖଣିଜ ମିଳେ ?”

ଅଫିସର—“ତମ୍ବା ଧାତୁର ଖଣିଜ ବିହାରର ସିଂହଭୂମି ଜିଲ୍ଲାର ଘାଟଶାଳା ଅଞ୍ଚଳରେ, ରାଜସ୍ଥାନର ଖେତ୍ରି ଓ ଦରିବୋ ଅଞ୍ଚଳରେ ପ୍ରଧାନତଃ ଖନନ କରାଯାଉଛି । ଏହା ସେତେ ଉତ୍କୃଷ୍ଟ ଧରଣର ଖଣିଜ ନୁହେଁ । ତମ୍ବାର ପରିମାଣ ଏଥିରେ ଖୁବ୍ କମ୍ ଅଛି । ଭାରତୀୟ ତମ୍ବା-କର୍ପୋରେସନ ଘାଟଶିଲା ଅଞ୍ଚଳର ମୋସାବଣୀ ତମ୍ବା ଖଣିରୁ ବହୁବର୍ଷ ହେଲଣି ତମ୍ବା ଧାତୁର ଖଣିଜ ଖନନ କରିଆସୁଛନ୍ତି । ଏସବୁ ଜାଗା ଛଡ଼ା ଆନ୍ଧ୍ରପ୍ରଦେଶର କେତେକ ଅଞ୍ଚଳ ଓ ଉତ୍ତର ପ୍ରଦେଶର ଆଲମୋରା ଓ ପାର୍ବତ୍ୟ ଅଞ୍ଚଳରେ ତମ୍ବା ଧାତୁ ଖଣିଜର ସନ୍ଧାନ ମିଳିଛି । ମୋସାବଣୀ ତମ୍ବା ଖଣିରୁ ଯେଉଁ ତମ୍ବାପଥର ବାହାରେ, ତାହା ପ୍ରାୟ ସେଠାରୁ ୧୬ ମାଇଲ ଦୂରବର୍ତ୍ତୀ ମଉଭଣ୍ଡାର ତମ୍ବା ନିଷ୍କାସନ କାରଖାନାକୁ ପଠାଯାଏ ।

ସୀସା ଓ ଦସ୍ତା ଧାତୁର ଖଣିଜ ଏକା ସହିତ ମିଳି ଥାଏ । ରାଜସ୍ଥାନ ପ୍ରଦେଶର ଉଦୟପୁର ଜିଲ୍ଲାର ଜଓ୍ୟାର୍ ଖଣିରୁ ସୀସା ଓ ଦସ୍ତା ଖଣିଜ ଉତ୍ପାଦିତ ହୋଇଥାଏ । ଜଓ୍ୟାର୍ ଖଣିକୁ ପରିଚାଳନା କରୁଛନ୍ତି ଭାରତୀୟ



( ମୋସାବଣୀ ତମ୍ବା ଖଣିର ବାହାର ଦୃଶ୍ୟ )

ଧାତବ କର୍ପୋରେସନ୍ । ଜଓ୍ୟାର ଖଣିରୁ ବାହାରୁଥିବା ସୀସାଧାତୁ ଖଣିଜକୁ ବିହାରର ଟୁଣ୍ଡୁ ଠାରେ ଥିବା ସୀସାଧାତୁ ନିଷ୍କାସନ କାରଖାନାକୁ ପଠାଇ ଦିଆଯାଏ ଏବଂ ଦସ୍ତାଯୁକ୍ତ ଖଣିଜକୁ ଜାପାନକୁ ପଠାଇ-ଦେବାକୁ ହୁଏ । ସେଠାରୁ ଦସ୍ତା ଧାତୁ ଆକାରରେ ଭାରତକୁ ଆସେ । ସେହିପରି ଟିଣ ଧାତୁର ଖଣିଜ ଭାରତରେ ବେଶି ମିଳେ ନାହିଁ । ବିହାରର ହଜାରିବାଗ୍, ରାଞ୍ଚି ଓ ଗୟା ଅଞ୍ଚଳରେ ଅଳ୍ପ ପରିମାଣରେ ଏହା ମିଳିଥାଏ । ମାଲୟରୁ ପ୍ରଧାନତଃ ଆମେ ଏହି ଖଣିଜ ଆମଦାନୀ କରିଥାଉ ।”

ଶରତ୍—“ଓଡ଼ିଶାରେ ଏସବୁ ଖଣିଜ କେଉଁଠାରୁ ମିଳିଥାଏ ?”

ଅଫିସର—“ଆମ ଏ ପ୍ରଦେଶର ମାଟିରେ ଏ ଖଣିଜ ପ୍ରାପ୍ତ ନାହିଁ କହିଲେ ଚଳେ । ବଲାଙ୍ଗୀର ଓ ମୟୂରଭଞ୍ଜ ଜିଲ୍ଲାର କେତେକ ସ୍ଥାନରେ ସୀସା ପଥର ମିଳୁଛି । କିନ୍ତୁ ଏହାର ପରିମାଣ ସେତେ ବେଶି ନୁହେଁ । ନିକେଲ୍, ଆଣ୍ଟିମନି, କୋବାଲ୍ଟ୍ ପ୍ରଭୃତି ଧାତୁର ଖଣିଜ ମଧ୍ୟ ଭାରତରେ ବିଶେଷ ନାହିଁ । ଏଗୁଡ଼ିକ ମଧ୍ୟ ବାହାରୁ ଆମଦାନୀ କରିବାକୁ ପଡ଼ିଥାଏ । ଗନ୍ଧକ ଖଣିଜ ମଧ୍ୟ ଆମ ଦେଶରେ ପ୍ରଚୁର ପରିମାଣରେ ନାହିଁ । ବିଦେଶରୁ ଗନ୍ଧକ ମଧ୍ୟ ଆମେ ଆମର ଚାହିଦା ପୂରଣ କରିବା ପାଇଁ ଆମଦାନୀ କରିଥାଉ ।

ସାଙ୍ଗେ ସାଙ୍ଗେ ସରପଞ୍ଚ ଉଠି ପଚାରିପକାଇଲେ—"ଆଚ୍ଛା, ଯେଉଁ ଗନ୍ଧକ କଥା କହିଲେ, ଆମେ ଜାଣୁ ଯେ ଏହା ଔଷଧ ତିଆରି କରିବାରେ ବ୍ୟବହୃତ ହୁଏ । ଏହାଛଡ଼ା ଗନ୍ଧକର ଆଉ କ'ଣ ବ୍ୟବହାର ଅଛି ?"

ଅଫିସର—"ସଲ୍‌ଫ୍ୟୁରିକ୍ ଏସିଡ୍ ତିଆରି କରିବା, ସାର ତିଆରି କରିବା, ପେଟ୍ରୋଲିଅମ୍ ପରିଷ୍କୃତ କରିବା, ଲୁହା ଏବଂ ଇସ୍ପାତ୍ କାରଖାନା, ରାସାୟନିକ କାରଖାନା, ରଙ୍ଗ, ରେୟନ୍, ସେଲୁଲୋଜ୍ ଫିଲ୍ମ, ବିସ୍ଫୋରକ ଓ ଲୁଗା ତିଆରି କାରଖାନାରେ ଏହା ବ୍ୟବହୃତ ହୋଇଥାଏ । ସଲଫର୍ ଡ଼ାଇ-ଅକ୍‌ସାଇଡ୍ ଭାବରେ ଏହା କାଗଜକଲ ଏବଂ ରବର ନିର୍ମିତ ଜିନିଷ ତିଆରି କାରଖାନାରେ ବ୍ୟବହୃତ ହୋଇଥାଏ । ଭାରତବର୍ଷରେ ମୌଳିକ ପଦାର୍ଥ ରୂପରେ ଗନ୍ଧକ ମିଳେ ନାହିଁ । ସେଥିପାଇଁ ଗନ୍ଧକ ଅଂଶ ଥିବା ଅନ୍ୟାନ୍ୟ ଧାତୁର ଖଣିଜରୁ ଆମେ ବର୍ତ୍ତମାନ ଗନ୍ଧକ ପାଇବାକୁ ଚେଷ୍ଟା କରୁଛୁ । ପାଇରାଇଟ୍ ନାମକ ଲୁହାର ସଲ୍‌ଫାଇଡ୍ ଖଣିଜରୁ ଗନ୍ଧକ ବାହାର କରିବାର ଚେଷ୍ଟା ହେଉଛି ।"

ସରପଞ୍ଚ—"ଏହି ପାଇରାଇଟ୍ ଖଣିଜ କେଉଁଠି ମିଳୁଛି ?"

ଅଫିସର—"ବିହାରର ସାହାବାଦ୍ ଜିଲ୍ଲା ଅନ୍ତର୍ଗତ ଆମଜୋର୍‌ଠାରେ ପ୍ରଚୁର ପାଇରାଇଟ୍ ଅଛି ବୋଲି ଅନୁସନ୍ଧାନରୁ ଜଣାପଡ଼ିଛି । ଏଥିରେ ଶତକଡ଼ା ୪୦ ଭାଗ ଗନ୍ଧକ ଅଛି । ଏଥିରୁ ଗନ୍ଧକ କିପରି ଲାଭଜନକଭାବରେ ଉଦ୍ଧାର କରାଯାଇ ପାରିବ, ସେଥିନିମନ୍ତେ ନ୍ୟାସନାଲ୍ ମେଟାଲର୍ଜିକାଲ ଲାବୋରେଟୋରୀ ଓ ଭାରତୀୟ ଖଣି ବ୍ୟୁରୋର ପରୀକ୍ଷାଗାରରେ ପରୀକ୍ଷା ଚାଲିଛି । ଆମ୍‌ଜୋର୍ ଛଡ଼ା ମହୀଶୂରର ଚିତଲ୍‌ଦ୍ରୁଗ ଜିଲ୍ଲା ଅନ୍ତର୍ଗତ ଇଙ୍ଗାଲ୍‌ଧଲ୍, ସିମଲା ନିକଟବର୍ତ୍ତୀ ତାରାଦେବୀ, ମାନ୍ଦ୍ରାଜର ପୋଲୁର୍ ଏବଂ କାଶ୍ମୀରର ଲସ୍‌ତିଆଲ୍‌ରେ କିଛି ପରିମାଣରେ ପାଇରାଇଟ୍ ଅଛି । ଆମ ଦେଶରେ ମିଳୁଥିବା ଜିପ୍‌ସମ୍ ପରି ପ୍ରାକୃତିକ ସଲ୍‌ଫେଟ୍ ଖଣିଜରୁ ଗନ୍ଧକ ବାହାର କରିବା ଦିଗରେ ଅଧିକ ଉଦ୍ୟମ ହେବା ଉଚିତ । ଏହାଛଡ଼ା ଲୁହା ଏବଂ ଇସ୍ପାତ୍ କାରଖାନାର କୋକ୍ ଚୁଲ୍ଲୀର ବାଷ୍ପରୁ ଗନ୍ଧକ ବାହାର କରିବା ପାଇଁ ମତ ଦିଆଯାଇଥିବା ଦେଖିବାକୁ ମିଳେ । କିନ୍ତୁ ଏହା ବିଶେଷ ଲାଭଜନକ ନୁହେଁ ।"

ସରପଞ୍ଚ—"ମୌଳିକ ପଦାର୍ଥ ରୂପରେ ଯେଉଁ ଗନ୍ଧକ ମିଳେ, ତାହା କ'ଣ ଆମ ଦେଶରେ ଆଦୌ ନାହିଁ ?"

ଅଫିସର—"ଏହି ପ୍ରକାରର ଗନ୍ଧକ ଆମ ଦେଶରେ ନାହିଁ କହିଲେ ଚଳେ । ତେବେ ନିକଟରେ କାଶ୍ମୀରର ପୁଗା ଉପତ୍ୟକାରେ ଏହି ଜାଗାସ୍ଥ ଗନ୍ଧକ ଥିବାର ଖବର ମିଳିଛି । ତେବେ କଥା ହେଉଛି, ଏହି ଜାଗାଟିକୁ ଯିବାଆସିବା ଦୃଷ୍ଟିରୁ ଏତେ ଅସୁବିଧା ରହିଛି ଯେ, ଯେ ପର୍ଯ୍ୟନ୍ତ ଭଲ ରାସ୍ତା ପ୍ରଭୃତି ଏଠାକୁ ନ ହୋଇଛି, ସେପର୍ଯ୍ୟନ୍ତ ଏହାକୁ ବାହାର କରାଯାଇ ବିନିଯୋଗ କରାଯାଇ ପାରିବ ନାହିଁ । ତେବେ ଯେ ଯାହାହେଉ, ଆମ ଦେଶରେ ଗନ୍ଧକର ଯାହା ଅଭାବ ରହିଛି, ତାହା ଯୁକ୍ତରାଷ୍ଟ୍ର-ଆମେରିକା, ଗ୍ରେଟ୍‌ବ୍ରିଟେନ୍ ଏବଂ ପଶ୍ଚିମ ଜର୍ମାନୀ ପ୍ରଭୃତି ଦେଶରୁ ଆମଦାନୀଦ୍ୱାରା ପୂରଣ କରାଯାଇ ପାରୁଛି । କାଶ୍ମୀରର ପୁଗା ଉପତ୍ୟକାଠାରୁ ଦକ୍ଷିଣ ପଶ୍ଚିମ ତିବ୍ବତର ତୁଣ୍ଡିସ୍ ପର୍ଯ୍ୟନ୍ତ ଏକ ବିସ୍ତୃତ ଅଞ୍ଚଳରେ ବୋରାକ୍ସ ନାମକ ଆଉ ଏକ ଖଣିଜ ମଧ୍ୟ ମିଳେ । ଲଦାଖ ଅଞ୍ଚଳରେ ମଧ୍ୟ ବୋରାକ୍ସ ରହିଛି । ଲୁହା ଏବଂ ଇସ୍ପାତ୍ ନିର୍ମିତ ବିଭିନ୍ନ ପଦାର୍ଥ ଉପରେ କଲାଇ କରିବାରେ ଏହା ବ୍ୟବହୃତ ହୋଇଥାଏ । ରାସାୟନିକ ଦ୍ରବ୍ୟ, ଔଷଧ, ଚମଡ଼ା, ଲୁଗା ଏବଂ କାଗଜ କାରଖାନାରେ ଏହାର ବ୍ୟବହାର ମଧ୍ୟ ଦେଖାଯାଏ । ଏହି ଖଣିଜ ମଧ୍ୟ ଯୁକ୍ତରାଷ୍ଟ୍ର-ଆମେରିକା ଏବଂ ଇଟାଲୀରୁ ପ୍ରଧାନତଃ ଭାରତ ଆମଦାନୀ କରିଥାଏ ।"

ଧରମୁ ମହାପାତ୍ରେ ଅଫିସରଙ୍କର ଭାଷଣରୁ ଜାଣିପାରିଥିଲେ, ଲୁଣ ବି ଏକ ଖଣିଜ । ଖାଇବା ଜିନିଷ ଛଡ଼ା ଆଉ ଅନ୍ୟ କୌଣସି ଶିଳ୍ପ-କ୍ଷେତ୍ରରେ ଲୁଣ ବ୍ୟବହାର କରାଯାଏ କି ନାହିଁ, ସେ ବିଷୟ ଜାଣିବାକୁ ସେ ଉଠି ପ୍ରଶ୍ନ କଲେ, "ଲୁଣ ତ ଖଣିଜ ବୋଲି ଆମେ ଜାଣିଛୁ । ଆମେ ସାଧାରଣତଃ ଜାଣୁ ଯେ ଲୁଣକୁ ଖାଇବା ଜିନିଷ ତିଆରି କରିବାରେ ଏବଂ ଖାଇବା ଜିନିଷ ସାଇତି ରଖିବାରେ ବ୍ୟବହାର କରାଯାଏ; କିନ୍ତୁ ଏହାଛଡ଼ା ଲୁଣ ଆଉ ଅନ୍ୟ କୌଣସି କ୍ଷେତ୍ରରେ ଦରକାର ପଡ଼ିଥାଏ କି ?"

"ସାଧାରଣ ଲୁଣ ଖାଦ୍ୟ ପଦାର୍ଥରେ ବ୍ୟବହୃତ ହେବାଛଡ଼ା ରାସାୟନିକ ଶିଳ୍ପରେ ବିଶେଷ ବ୍ୟବହୃତ ହୋଇଥାଏ । ଆସ୍ ବା ସୋଡ଼ିଅମ୍ କାର୍ବୋନେଟ୍ ନାମକ ରାସାୟନିକ ଦ୍ରବ୍ୟ ଏଥିରୁ ତିଆରି ହୁଏ ।

ଏହାଛଡ଼ା ସୋଡ଼ିଅମ୍ ସଲ୍‌ଫେଟ୍, କଷ୍ଟିକ ସୋଡ଼ା, ହାଇଡ୍ରୋକ୍ଲୋରିକ୍ ଏସିଡ୍, ସୋଡ଼ିଅମ୍, କ୍ଲୋରିନ୍ ଏବଂ ଏହାର ବିଭିନ୍ନ ରାସାୟନିକ ଯୌଗିକ ପଦାର୍ଥ ଏଥିରୁ ପ୍ରସ୍ତୁତ କରାଯାଇଥାଏ । ସୋଡ଼ିଅମ୍ ଏକ କୋମଳ, ହାଲୁକା ଓ ରୁପା ବର୍ଣ୍ଣର ଏକ ଧାତୁ । ଗୋଟିଏ ଛୁରୀ ସାହାଯ୍ୟରେ ଏହାକୁ କଟାଯାଇପାରେ ଏବଂ ଆଙ୍ଗୁଠିରେ ବଙ୍କା କରାଯାଇପାରେ । ଶିଳ୍ପ-କ୍ଷେତ୍ରରେ ଏହାର ବହୁଳ ବ୍ୟବହାର ରହିଛି । କ୍ଲୋରିନ୍ ଏକ ପୀତ ଓ ସବୁଜ ବର୍ଣ୍ଣର ବାଷ୍ପ । ଏହାକୁ ନେଇ ବ୍ଲିଚିଂ ପାଉଡ଼ର୍ ତିଆରି ହୁଏ । ସୁନା, ରୁପା ଧାତୁକୁ ପରିଷ୍କୃତ କରାଇବାରେ, ସୀସା ଧାତୁରୁ ଦସ୍ତା ଧାତୁକୁ ଅଲଗା କରାଇବାରେ ଏବଂ ଜିର୍‌କନ୍ ନାମକ ଖଣିଜରୁ ଜିର୍‌କୋନିଅମ୍ ବାହାର କରିବାର ପ୍ରାଥମିକ ଅବସ୍ଥାରେ କ୍ଲୋରିନ୍ ବ୍ୟବହାର କରାଯାଇଥାଏ । ଯେଉଁ ଦେଶମାନଙ୍କରେ ଶୀତଦିନେ ରାସ୍ତାଘାଟରେ ବରଫ ଜମି ରହିଥାଏ, ସେହି ଦେଶମାନଙ୍କରେ ରାସ୍ତାରୁ ବରଫ ତରଳାଇବା ପାଇଁ ଲୁଣ ବ୍ୟବହାର କରାଯାଏ । ଖାଇବା ଲୁଣ ସମୁଦ୍ରଜଳରୁ ଉଦ୍ଧାର କରାଯିବା କଥା ତ ଆପଣମାନେ ନିଶ୍ଚୟ ଜାଣିଥିବେ । ଖାଇବା ଲୁଣ ବା ସୋଡ଼ିଅମ୍ କ୍ଲୋରାଇଡ଼୍ ବ୍ୟତୀତ କ୍ୟାଲସିଅମ୍, ମ୍ୟାଗ୍‌ନେସିଅମ୍ ଏବଂ ପଟାସିଅମ୍ ସଲ୍‌ଫେଟ୍, ପଟାସିଅମ ଏବଂ ମ୍ୟାଗ୍‌ନେସିଅମ୍ କ୍ଲୋରାଇଡ଼୍ ଏବଂ କ୍ୟାଲ୍‌ସିଅମ୍ କାର୍ବୋନେଟ୍ ପ୍ରଭୃତି ଅନ୍ୟାନ୍ୟ ଲବଣ ମଧ୍ୟ ସମୁଦ୍ରଜଳରୁ ମିଳେ । ଏଗୁଡ଼ିକର ମଧ୍ୟ ରାସାୟନିକ ଶିଳ୍ପ କ୍ଷେତ୍ରରେ ବହୁ ଉପଯୋଗିତା ଅଛି । ସମୁଦ୍ର ଛଡ଼ା କେତେକ ହ୍ରଦରୁ ମଧ୍ୟ ଲୁଣ ମିଳିଥାଏ । ରାଜସ୍ଥାନର ସମ୍ବର ହ୍ରଦ ହେଉଛି ଏହିପରି ଏକ ପ୍ରସିଦ୍ଧ ହ୍ରଦ; ଯେଉଁଥିରୁ ପ୍ରଚୁର ଲୁଣ ଆମଦାନୀ କରାଯାଇଥାଏ ।" ଧରମୁ ମହାପାତ୍ରଙ୍କ ପ୍ରଶ୍ନର ଉତ୍ତରରେ ଅଫିସର ଏ କଥା କହିଲେ ।

ଧରମୁ ମହାପାତ୍ର—"ଆମ୍ଭେ ଶୁଣିଛୁ ଯେ ପଥର-ପାହାଡ଼ପରି ଲୁଣ-ପାହାଡ଼ ମଧ୍ୟ ଅଛି । ଏ କଥା କ'ଣ ସତ ?"

ଅଫିସର—"ସମୁଦ୍ର ଓ ହ୍ରଦ ଛଡ଼ା ପ୍ରାକୃତିକ ଅବସ୍ଥାରେ ମଧ୍ୟ କଠିନ ପଥର ପରି ଲବଣସ୍ତର ଦେଖିବାକୁ ମିଳେ; କିନ୍ତୁ ଭାରତରେ ଏ ପ୍ରକାର ଲବଣ ବେଶି ନାହିଁ । ପାକିସ୍ଥାନ ବିଚ୍ଛିନ୍ନ ହୋଇଯିବାପରେ

ଏହାପରେ ଲବଣ ମିଳୁଥିବା ଅଞ୍ଚଳ ଆମେ ଦେଖିଲୁ । ହିମାଚଳ ପ୍ରଦେଶର ମାଣ୍ଡି ଅଞ୍ଚଳରେ ଏହି ଜାତୀୟ ପଥର ଲବଣ ମିଳେ । ଭାରତ ଲୁଣ ଉତ୍ପାଦନରେ ସ୍ୱାବଲମ୍ବୀ । ନିଜର ଆବଶ୍ୟକତା ପୂରଣ କରିବା ପରେ ମଧ୍ୟ କିଛି ଲୁଣ ଆମେ ବାହାରକୁ ରପ୍ତାନି କରିଥାଉ ।"

ସରପଞ୍ଚ—"ସୁନା ଓ ରୁପାର ଖଣିଜ ଆମ ଭାରତରେ କେଉଁ ପରିମାଣରେ ଅଛି ?"

ଅଫିସର—"ଭାରତରେ ସୁନା ଖଣି ଅଛି ମହୀଶୂର ପ୍ରଦେଶର କୋଲାର୍‌ଠାରେ ଏହି । ଯେଉଁ ଅଞ୍ଚଳରେ ସୁନା ମିଳେ, ସେହି ସ୍ଥାନଟି ଆୟତନରେ ବେଶ୍ ବଡ଼—ଦୈର୍ଘ୍ୟରେ ୪୦ ମାଇଲ ଏବଂ ପ୍ରସ୍ଥରେ ୩।୪ ମାଇଲ ହେବ । ସ୍ଥାନଟିରେ ସୁନାଖଣି ରହିଛି । ସୁବର୍ଣ୍ଣରେଖା, ବ୍ରାହ୍ମଣୀ ପ୍ରଭୃତି ନଦୀବାଲିରେ ସୁନାଗୁଣ୍ଡ ମିଳେ; କିନ୍ତୁ ଏହା ସଂଗ୍ରହ କରିବା ବଡ଼ କଷ୍ଟକର ବ୍ୟାପାର । ଓଡ଼ିଶାର କେନ୍ଦୁଝର ଜିଲ୍ଲାର କେତେକ ସ୍ଥାନରେ ପଥର ସହିତ ସୁନା ଥିବାର ଖବର ଶୁଣାଯାଏ; କିନ୍ତୁ ଏ ବିଷୟରେ ବୈଜ୍ଞାନିକ ତଥ୍ୟ ସଂଗ୍ରହ ହୋଇନାହିଁ । ରୁପାର ଖଣିଜ ସ୍ୱତନ୍ତ୍ରଭାବରେ ମିଳେ ନାହିଁ । ଜିଙ୍କର ଖଣିଜ, ସୀସାଧାତୁ ଖଣିଜ ଓ କୋଲାର୍ ଖଣିର ସୁନା ସହିତ ରୁପା ଅଳ୍ପ ପରିମାଣରେ ମିଶି ରହିଥାଏ ଏବଂ ଏହିଥିରୁହିଁ ଯାହା ରୁପା ବାହାର କରାଯାଇଥାଏ ।"

ସରପଞ୍ଚ—"ଆମେ ଜାଣୁ ଯେ ଆମ ଦେଶରେ ଆଗେ କେତେଗୁଡ଼ିଏ ମୂଲ୍ୟବାନ୍ ହୀରା ମିଳୁଥିଲା । ଇତିହାସପ୍ରସିଦ୍ଧ କୋହିନୂର୍ ହୀରା କଥା ତ ସମସ୍ତେ ଜାଣନ୍ତି; ତେବେ ବର୍ତ୍ତମାନ ଆମ ଦେଶରେ ହୀରା କେଉଁଠାରେ ମିଳୁଛି ?"

ଅଫିସର—"ବହୁ ପ୍ରାଚୀନକାଳରୁ ହୀରା ପ୍ରତି ଭାରତୀୟମାନେ ଆକର୍ଷିତ ହୋଇଛନ୍ତି । ତେବେ ବର୍ତ୍ତମାନ ମଧ୍ୟପ୍ରଦେଶର ପାନ୍ନା ଅଞ୍ଚଳରେ ପ୍ରଧାନତଃ ହୀରା ଖନନକାର୍ଯ୍ୟ ଚାଲିଛି । ଆନ୍ଧ୍ରପ୍ରଦେଶର ଅନନ୍ତପୁର ଜିଲ୍ଲା ଓ ଓଡ଼ିଶାର ସମ୍ବଲପୁର ଜିଲ୍ଲାରେ ମଧ୍ୟ ହୀରା ମିଳିଥିବାର ଜଣାଯାଇଛି । ହୀରା ଛଡ଼ା ମୂଲ୍ୟବାନ ମରକତମଣି ପଥର ରାଜସ୍ଥାନରେ ଏବଂ ନୀଳକାନ୍ତମଣି ପଥର କାଶ୍ମୀରରେ ମିଳୁଛି ।"

ସରପଞ୍ଚ—"ସମ୍ବଲପୁରର ହୀରାକୁଦଠାରେ ହୀରା ମିଳୁଥିଲା ବୋଲି ବୋଧହୁଏ ଏପରି ନାଁ ଦିଆଯାଇଛି ।"

ଅଫିସର—"କୌଟିଲ୍ୟଙ୍କର ଅର୍ଥଶାସ୍ତ୍ରରେ ଅଛି ଯେ କଳିଙ୍ଗରେ ହୀରା ମିଳୁଥିଲା । ଗ୍ରୀକ୍ ଲେଖକ ଟଲେମି ଓଡ଼ିଶାର ହୀରା କଥା ବର୍ଣ୍ଣନା କରିଛନ୍ତି । ଫରାସୀ ପର୍ଯ୍ୟଟକ ଟାଭର୍ଣ୍ଣିୟର୍ ସମ୍ବଲପୁରର ହୀରା କଥା ବର୍ଣ୍ଣନା କରିଛନ୍ତି । କ୍ଲାଇଭ ମୋଟ୍ଟେଙ୍କୁ ହୀରା ବେପାର ଅନୁସନ୍ଧାନ କରିବାକୁ ସମ୍ବଲପୁରକୁ ପଠାଇଥିବା କଥା ଆମେ ଜାଣୁ । ହୀରା କାରବାର ଦିନେ ଓଡ଼ିଶାର ଏକ ପ୍ରଧାନ ବ୍ୟବସାୟ ଥିଲା ।"

ସରପଞ୍ଚ—"ହୀରା କ'ଣ କେବଳ ମୂଲ୍ୟବାନ୍ ଆଳଙ୍କାରିକ ପଥର ହିସାବରେ ବ୍ୟବହୃତ ହୁଏ, ନା ତା'ର ଆଉ କିଛି ବ୍ୟବହାର ଅଛି ?"

ଅଫିସର—"ହୀରାକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଏ । ଏକଜାତୀୟ ହୀରା ଆଳଙ୍କାରିକ ପଥର ହିସାବରେ ବ୍ୟବହାର କରାଯାଏ ଏବଂ ଆଉ ଅନ୍ୟ ଏକଜାତୀୟ ହୀରାକୁ ଶିଳ୍ପକ୍ଷେତ୍ରରେ ବ୍ୟବହାର କରାଯାଏ । ଏହାକୁ କୁହାଯାଏ ବୋର୍ଟ । ଶିଳ୍ପକ୍ଷେତ୍ରରେ ହୀରାର ଆବଶ୍ୟକତା ପଡ଼େ । ହୀରାର କଠିନତା ହେଉଛି ସବୁଠାରୁ ବେଶି; ତେଣୁ ହୀରାକୁ କାଚ କାଟିବାରେ ବ୍ୟବହାର କରାଯାଏ । ଖଣିଜଦ୍ରବ୍ୟ ଅନୁସନ୍ଧାନ ବା କଠିନ ପ୍ରସ୍ତରସ୍ତରକୁ କାଟି ଭିତରକୁ ଗଭୀର ଗର୍ତ୍ତ କରିବାରେ ହୀରାର ଆବଶ୍ୟକତା ବେଶି । ବହୁ ସୂକ୍ଷ୍ମ ଯନ୍ତ୍ରପାତିରେ ହୀରା ମଧ୍ୟ ବ୍ୟବହାର କରାଯାଇଥାଏ । ହୀରା ବ୍ୟବସାୟ ପାଇଁ ଯାନ୍ତ୍ରା ପ୍ରସିଦ୍ଧି ଲାଭ କରିଛି । ଅଳଙ୍କାରିକ ହୀରା ବୋର୍ଟ ଅପେକ୍ଷା ବେଶି ଉତ୍ପାଦିତ ହୁଏ । ଆମର ଯାହା ହୀରା ଉତ୍ପାଦନ କରାଯାଏ, ତାହା ଆମ ଦେଶରେ ହିଁ ଖର୍ଚ୍ଚ ହୋଇଯାଏ; ତଥାପି ମଧ୍ୟ ଆମର ଆବଶ୍ୟକତା ପୂର୍ଣ୍ଣଭାବରେ ମେଣ୍ଟେ ନାହିଁ । ତେଣୁ ବିଦେଶରୁ ଆମଦାନୀ କରିବାକୁ ପଡ଼ିଥାଏ ।

ସରପଞ୍ଚ—"କେଉଁ କେଉଁ ଦେଶରୁ ତେବେ ଆମେ ହୀରା ଆମଦାନୀ କରୁ ?"

ଅଫିସର—"କଙ୍ଗୋ, ଘାନା ଏବଂ ଦକ୍ଷିଣ-ଆଫ୍ରିକାରେ ପ୍ରଚୁର ହୀରା ମିଳେ । ଏହି ଦେଶମାନଙ୍କରୁ ପ୍ରଧାନତଃ ଆମର ହୀରା ଆମଦାନୀ

ହୋଇଥାଏ । ଏ ତ ଗଲା ପ୍ରାକୃତିକ ଉପାୟରେ ମିଳୁଥିବା ହୀରା କଥା । କୃତ୍ରିମ ଉପାୟରେ ହୀରା ତିଆରି କରିବାରେ ଯୁକ୍ତରାଷ୍ଟ୍ର-ଆମେରିକାର ଜେନେରାଲ୍ ଇଲେକ୍ଟ୍ରିକ୍ କମ୍ପାନୀ ନାମକ ଏକ ଅନୁଷ୍ଠାନ କୃତକାର୍ଯ୍ୟ ହୋଇଛନ୍ତି; କିନ୍ତୁ ଏଥିରେ ଅପର୍ଯ୍ୟାପ୍ତ ଅର୍ଥ ଖର୍ଚ୍ଚ ହୁଏ ଏବଂ ଏହା ଲାଭଜନକ ନୁହେଁ ।"

ପାଣୁ ଏସବୁ କଥା ବଡ଼ ଆଗ୍ରହର ସହିତ ଶୁଣୁଥାଏ; କିନ୍ତୁ ତା'ର ବହୁତ ଆଗରୁ ଲକ୍ଷ୍ୟ ଥାଏ ସେ ପେଟ୍ରୋମାକ୍ସ ଲାଇଟ୍ ଉପରେ ଦିଆଯାଇଥିବା ଅଭ୍ରର ଢାଙ୍କୁଣୀଟି ଉପରେ । ଅଭ୍ରକଥା ତ କେହି ପଚାରୁ ନାହାନ୍ତି । ଅଭ୍ର ଚଦରଟି ଆଗରୁ ଦେଖି ସମସ୍ତେ କପରି ଚୂପ୍ ହୋଇ ବସି ରହିଛନ୍ତି । ଅଭ୍ର ସମ୍ବନ୍ଧରେ ମଧ୍ୟ ଅଫିସରଙ୍କଠାରୁ କିଛି ଜାଣିବା ଦରକାର । ପାଣୁ ସପନକୁ ହଲାଇ ଦେଇ କହିଲା, "ଆରେ ସପନ ! ଏତେ କଥା ତ ଶୁଣିଲେ, ତୁ କ'ଣ ଅଭ୍ର କଥାଟି ଏକବାର ଭୁଲିଯାଉଛୁ କି ରେ ? ଏ ଅଭ୍ର ଆମ ଭାରତ ଦେଶରେ କୋଉ କୋଉ ଜାଗାରେ ମିଳେ, ସେ ବିଷୟ ଟିକେ ତ ଆମେ ଜାଣିରଖିବା ଦରକାର । ଅଭ୍ର ଚଦର ଖଣ୍ଡିକ ଯୋଉ ବାବୁ ଦେଖାଇଲେ, ତାକୁ ଖାଲି ଦେଖିଦେଲେ କ'ଣ ହେବ, ବାବୁଙ୍କୁ ଟିକେ ପଚାରିବା । ଦେଖୁଛୁ ତ ବାପ, ମୁଁ ଏଇନେ ପଚାରିଲେ ଲୋକ ହସିବେ—କହିବେ, ଏ ବୁଢ଼ାଟା କୋଉଦିନ ଏମିତି ଜାଣିବା ଲୋକ ହୋଇଗଲାଣି । ଆଜକାଲି ଟୋକାଟାକଳିଆଙ୍କ କଥା ଦେଖୁନୁ; ଖାଲି କୁହୁଡ଼ ପଡ଼ିଛନ୍ତି । ଏସବୁ ଜାଣିରଖିବା କଥା କେତେ ଜଣ ମନ ଦେଇ ଶୁଣୁଛନ୍ତି ବା ଜାଣିବାକୁ ଚେଷ୍ଟା କରୁଛନ୍ତି ? ହଉ, ଟିକିଏ ଉଠି ପଚାରିଲୁ ବାପ !"

ସପନ—"ଦେଖୁଛ ପାଣୁ ମଉସା ! ରାତି ଆସି ପହରେ ହେଲାଣି, ଶିଆଳ ବୋବେଇଲେଣି, ଘୁମ ମାଡ଼ିଲାଣି; ଅଭ୍ର କଥା କିଏ ପଚାରୁଛି ହେ ? ପରେ କାହାକୁ ପଚାରି ବୁଝିନେବା ନା ? ତମର ଯଦି ଇଚ୍ଛା ଅଛି, ତମେ ପଚାରୁନ ! କିଏ କାହିଁ କ'ଣ କହିବେ ?"

—"ମୁଁ ଜାଣେ ପରା, ତୁ ସେଇଆ କହିବୁ । ହଇ ରେ, ଏ ବାବୁ ହେଲେ ସର୍ବକାଳ ଲୋକ । ସରକାର ତ ଏମିତି ଯୋଜନା କରି ଗାଁଗହଳିକୁ ଏମିତି ଅଫିସରମାନଙ୍କୁ ପଠାଉଛନ୍ତି ଖଣିଜ ସମ୍ପଦ ସମ୍ବନ୍ଧରେ

କହିବାକୁ । ଏଙ୍କଠୁ ପଚ୍ଚରି ବୁଦ୍ଧିବାନ ତ ଆଉ କାହାଠୁ ପଚାରି ବୁଝିବା ? ଆମକୁ ଖଣିଜ ସଂପଦ ସମ୍ବନ୍ଧରେ ବୁଝାଇବା ପାଇଁ ତ ସେ ଆସିଛନ୍ତି । କେତେ କଥା ହେଇଟି କହିଲେଣି, କୋଉଁଠି ଜଣାଥିଲା ତମକୁ ? ନା ତମକୁ କଏସେ ଏକଥା କହିଥାଆନ୍ତା ? ହଉ, ଗୁଡ଼—ମୋତେ ଏଥର ଉଠିବାକୁ ପଡ଼ିବ—ମନ ଯେତେବେଳେ ଗୁହୁଁଛି···"

ଅଫିସର ଚଳଚ୍ଚିତ୍ର ଦେଖାଇବାର ପ୍ରସ୍ତୁତ କରିବା ନିମନ୍ତେ ଆଉ ଜଣେ ସହକର୍ମୀଙ୍କୁ କେତେକ ନିର୍ଦ୍ଦେଶ ଦେଉଥାଆନ୍ତି—ଚଳଚ୍ଚିତ୍ର ଦେଖା ସରିଲେ କାର୍ଯ୍ୟକ୍ରମ ଶେଷ ହେବ ।

ପାଣୁ ଏହି ସମୟରେ ଉଠି ପଚାରିଲା—"ହଜୁର ! ମୋର ଗୋଟିଏ କଥା ପଚାରିବାର ଅଛି । ଦୟା କରି ହଜୁର କହିଲେ, ପଚାରିବି ।"

ଅଫିସର—"ହଁ, ଭୟ କରିବାର ତ କିଛି ନାହିଁ । ଆପଣମାନଙ୍କର ପ୍ରଶ୍ନର ଉତ୍ତର ଦେଇପାରିଲେ ତ ମୁଁ ନିଜେ ଆନନ୍ଦ ଅନୁଭବ କରିବି । ଆପଣମାନଙ୍କୁ ଏଇସବୁ ବିଷୟ ବୁଝାଇବା ମୋର କାମ—ପଚାରନ୍ତୁ ।"

ପାଣୁ—"ଏଇ ଯେଉଁ ଅଭ୍ର ପଦର ଆପଣ କିଛି ସମୟ ପୂର୍ବେ ଦେଖାଇଥିଲେ, ସେ ଅଭ୍ର କ'ଣ ଆମ ଭାରତ ଦେଶରେ ମିଳେ, ନା ଅନ୍ୟ ଦେଶରୁ ଆମ ଦେଶକୁ ଆସେ ?"

ଅଫିସର୍—"ଅନ୍ୟ ଦେଶରୁ ଆମର ଅଭ୍ର ଆଣିବାର ପ୍ରଶ୍ନ ଉଠୁନାହିଁ । ଅଭ୍ର ଉତ୍ପାଦନରେ ଭାରତ ପ୍ରଥମ ସ୍ଥାନ ଅଧିକାର କରିଛି ପୃଥିବୀରେ; ବରଂ ଅନ୍ୟ ଦେଶକୁ ଭାରତ ଅଭ୍ର ରପ୍ତାନି କରୁଛି । ଆମର ନିଜର ଚାହିଦା ପୂରଣ କରି ଯୁକ୍ତରାଷ୍ଟ୍ର-ଆମେରିକା, ବିଲାତ, ଫ୍ରାନସ୍, ପଶ୍ଚିମ ଜର୍ମାନୀ, ଇଟାଲୀ ଏବଂ ଜାପାନକୁ ଆମେ ଅଭ୍ର ରପ୍ତାନି କରୁଛୁ ।"

ପାଣୁ—"ସେ କଥା କ'ଣ ଆମେ ଆଉ ଜାଣିଛୁ ? ମୋର ଧାରଣା ଠିକ୍ ଓଲଟା ଥିଲା ଆଜ୍ଞା ! ଏ ନଈବାଲିରେ ଚକ୍ ଚକ୍ କରୁଥିବା ଟ୍ରେଟ ଟ୍ରେଟ ଅଭ୍ରଗୁଣ୍ଡ ଦେଖି ମୁଁ ମନେ କରିଥିଲି ଯେ ଆମ ଭାରତରେ ବୋଧହୁଏ ବଡ଼ ଅଭ୍ର ପଦର ମିଳେ ନାହିଁ । ଭାରତରେ କେଉଁ ଜାଗାରେ ଅଭ୍ର ପଦରର ଖଣି ଅଛି ?"

ଅଫିସର୍—"ବିହାର ପ୍ରଦେଶର ହଜାରିବାଗ, କୋଦର୍ମା, ଗୟା ପ୍ରଭୃତି ଅଞ୍ଚଳରେ ଉତ୍କୃଷ୍ଟ ଧରଣର ଅଭ୍ର ଖଣି ରହିଛି । ଏହାଛଡ଼ା ରାଜସ୍ଥାନର ଆଜମିର୍, ଆନ୍ଧ୍ରପ୍ରଦେଶର ନେଲୋର ପ୍ରଭୃତି ଅଞ୍ଚଳରେ ମଧ୍ୟ ଭଲ ଧରଣର ଅଭ୍ର ଖଣି ଅଛି ।"

ପାଣୁ—"ଆମ ଓଡ଼ିଶାରେ କ'ଣ ହଜୁର୍ ଅଭ୍ର ଖଣି ଅଛି ?"

ଅଫିସର୍—"ଓଡ଼ିଶାରେ ଭଲ ଧରଣର ଅଭ୍ର ଖଣି ନାହିଁ । କୋରାପୁଟ ଓ ଢେଙ୍କାନାଳ ଜିଲ୍ଲାର କେତେକ ଅଞ୍ଚଳରେ ଅଭ୍ର ମିଳୁଥିବାର ଜଣାଯାଏ; କିନ୍ତୁ ତାହା ସେତେ ଉତ୍କୃଷ୍ଟ ଧରଣର ନୁହେଁ ।"

ପାଣୁ—"ପେଟ୍ରୋମାକ୍ସ ଲାଇଟର ଖୋଳଣି ଛଡ଼ା ଆଉ କେଉଁଥିରେ ଅଭ୍ର ବ୍ୟବହୃତ ହୁଏ ?"

ଅଫିସର୍—"ଆଗରୁ କହିଛି ଯେ ବିଦ୍ୟୁତ୍-ଶିଳ୍ପରେ ଅଭ୍ରର ଆବଶ୍ୟକତା ବହୁତ ବେଶି । ସ୍ପାର୍କ ପ୍ଲାଗ୍, ଟ୍ରାନ୍ସଫର୍ମର, ରେଡ଼ିଓ କନ୍‌ଡେନସର୍ ଏବଂ ବିଦ୍ୟୁତ୍ ଅପରିବାହୀ ପଦାର୍ଥରୂପେ ମୁଖ୍ୟତଃ ଏହାକୁ ବ୍ୟବହାର କରାଯାଏ । ଅଭ୍ରଗୁଣ୍ଡାକୁ ବିଭିନ୍ନ ରଙ୍ଗ, ଔଷଧ, ଏବଂ ବିଏଲର୍ ଭିତରେ ଏକ ପତଳା ଆସ୍ତରଣ ତିଆରି କରିବାରେ ବ୍ୟବହାର କରାଯାଏ । ଅଭ୍ରରୁ ତିଆରି ହେଉଥିବା ମାଇକାନାଇଟ୍‌ର ମଧ୍ୟ ବହୁତ ବ୍ୟବହାର ରହିଛି । ମୋଟ ଉପରେ ଶିଳ୍ପକ୍ଷେତ୍ରରେ ବ୍ୟବହୃତ ହେଉଥିବା ଖଣିଜ-ମାନଙ୍କ ମଧ୍ୟରେ ଅଭ୍ର ଏକ ଅତି ମୂଲ୍ୟବାନ୍ ଖଣିଜ ।"



ଲୋକମାନଙ୍କର ପ୍ରଶ୍ନ ସରିଲା । ସଙ୍ଗେ ସଙ୍ଗେ ଚଳଚ୍ଚିତ୍ର ଦେଖାଯିବା କାର୍ଯ୍ୟ ଆରମ୍ଭ ହେଲା । ଅନେକ ଲୋକଙ୍କର ଆଗରୁ ଥାଏ ଏହାରି ଉପରେ ଲକ୍ଷ୍ୟ; କିନ୍ତୁ ଏ ଚଳଚ୍ଚିତ୍ର ତ ଆମର ସହର-ବଜାରରେ ସିନେମା ଗୃହରେ ଦେଖାଯାଉଥିବା ଚଳଚ୍ଚିତ୍ର ପରି ନୁହେଁ । ଯେଉଁ ଖଣିଜ-ସମ୍ପଦ ସମ୍ବନ୍ଧରେ ଅଫିସର୍ ସେଦିନ ଲୋକମାନଙ୍କୁ ବକ୍ତୃତା ଦେଲେ, ସେହି ସମ୍ପର୍କୀୟ ଚଳଚ୍ଚିତ୍ର । ଖଣିଜ ଦ୍ରବ୍ୟ କିପରି ଉଦ୍ଧାଯାଇଥିବାରେ,

ଚଳଚ୍ଚିତ୍ର ସାହାଯ୍ୟରେ ମଧ୍ୟ ତାହା ଦେଖାଇ ଦିଆଗଲା । ଏହାଛଡ଼ା ଭୂତତ୍ତ୍ୱବିତ୍ କିପରି କଠୋର ପରିଶ୍ରମ କରି ଖରା, ବର୍ଷା, ପାଣି, କାକର, ଥଣ୍ଡାକୁ ନ ଡରି ଏବଂ ବିଭିନ୍ନ ବାଧାବିଘ୍ନର ସମ୍ମୁଖୀନ ହୋଇ ଖଣିଜ-ସମ୍ପଦର ଅନୁସନ୍ଧାନ କରେ ଏବଂ ପାହାଡ଼ପର୍ବତ ଏବଂ ଘୋର ଜଙ୍ଗଲ ଅଞ୍ଚଳରେ ତମ୍ବୁ ପକାଇ ରହି ଏକ ଦୁଃସାହସିକ ଜୀବନଯାପନ କରେ ଏବଂ ଭୂଗର୍ଭରେ ଲୁକ୍କାୟିତ ଖଣିଜ ସମ୍ପଦ ସମ୍ବନ୍ଧରେ ତଥ୍ୟ ଯୋଗାଇଥାଏ, ତାହା ଗୋଟିକ ପରେ ଗୋଟିଏ ଦୃଶ୍ୟ ଆକାରରେ ପରଦା ଉପରେ ଗଡ଼ି-ଚାଲିଲା । ଭୂଗର୍ଭର ଖଣିଜ ସମ୍ପଦକୁ ପ୍ରମାଣିତ କରିବା ପାଇଁ ହେଉଥିବା ଖନନ ବା ଡ୍ରିଲିଂ, ଉଡ଼ାଜାହାଜ ପ୍ରଭୃତି ସାହାଯ୍ୟରେ ହେଉଥିବା ସର୍ଭେ, ଖଣି ଅଞ୍ଚଳରେ ବିସ୍ଫୋରକ ଦ୍ରବ୍ୟ ସାହାଯ୍ୟରେ ଖଣିଜ ଫୁଟାଇବା ଏବଂ ପରେ ତାକୁ ଖୋଳି ନେବା, ଖଣି ଅଞ୍ଚଳରେ ହେଉଥିବା ବିଭିନ୍ନ ମେସିନ୍ ସାହାଯ୍ୟରେ ଖନନକାର୍ଯ୍ୟର ଚଳଚ୍ଚିତ୍ର ପ୍ରଦର୍ଶିତ ହୋଇଥିଲା । ଲୋକ-ମାନଙ୍କ ପକ୍ଷରେ ଏହା ହୋଇଥିଲା ବେଶ୍ ଉପଭୋଗ୍ୟ । କେତେ ଲୋକ ବା ବିଭିନ୍ନ ଅଞ୍ଚଳ ବୁଲି ଏସବୁ ନିଜ ଆଖିରେ ଦେଖି ଗୋଟାଏ ଧାରଣା କରିବାର ସୁଯୋଗ ପାଇଥାଆନ୍ତି ? କିନ୍ତୁ ସେଦିନ ଚଳଚ୍ଚିତ୍ର ସାହାଯ୍ୟରେ ଏହି ସୁଯୋଗ ସେମାନେ ପାଇ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ମାଟିର ଏଇ ମଣିଷ ନିଜର ବୁଦ୍ଧିବିଦ୍ୟାବଳରେ ଯେ ଏଇ ମାଟିଭିତରୁ ବାହାର କରିପାରୁଛି ମୂଲ୍ୟବାନ୍ ସମ୍ପଦ—ହୀରା, ମୀନା, ମୋତି, ମାଣିକ ସବୁକିଛି, ତା'ର ଏକ ସ୍ପଷ୍ଟ ଛବି ମଧ୍ୟ ସେହି ସରଳ ଆଦିବାସୀ ବି ସେଦିନ ଦେଖି ପାରିଥିଲା ଏବଂ ବୁଝିପାରିଥିଲା । ଖଣିଜ ସମ୍ପଦ ଅନୁସନ୍ଧାନର ସେହି ଉତ୍ତେଜନା ତା'ର ପ୍ରାଣକୁ ସେଦିନ ସ୍ପର୍ଶ କରିପାରିଥିଲା । ତାର ନିଜର ଏହି ଓଡ଼ିଶା ଭୂଇଁରେ କେତେ ଜାତିର ଖଣିଜ ଅଛି, ସେ କଥା ଶୁଣି ଶୁଣି ସେ ଆଶ୍ଚର୍ଯ୍ୟ ହୋଇଉଠିଥିଲା । ଲୁହାପଥର, ମାଙ୍ଗାନିଜ୍ ଧାତୁ ପଥର, କ୍ରୋମାଇଟ୍, ଚୂନପଥର, ଡୋଲୋମାଇଟ୍ ଖଣିଜ ଯେ ଆମର ଓଡ଼ିଶା ମାଟିରେ ପ୍ରଚୁର ପରିମାଣରେ ଭରି ରହିଛି ଏବଂ ଏହି ଖଣିଜ ଯେ ଓଡ଼ିଶାରୁ ଆଜି ସର୍ବାଧିକ ପରିମାଣରେ ଉତ୍ପାଦିତ ହୋଇପାରୁଛି, ସେକଥା ପ୍ରତ୍ୟେକ ଲୋକଙ୍କ କାନରେ ବାଜିଥିଲା । ଖାଲି କ'ଣ ଏତିକି ! ବକ୍‌ସାଇଟ୍, ନିଆଁମାଟି, ଚିନାମାଟି, ପଥରକୋଇଲା ପ୍ରଭୃତି ଖଣିଜରେ ଯେ ଆମ ପ୍ରଦେଶ ଭରପୂର ହୋଇ ରହିଛି, ତା'ରି ସମସ୍ତେ ଜାଣିବାକୁ

ପାଇଥିଲେ । ମାଟିଭିତରେ ବି କୋଟି କୋଟି ଟଙ୍କା ଖଣିଜ ଆକାରରେ ରହିଛି । ଓଡ଼ିଶାର ଖଣିଜରେ ବାହାରର କଳକାରଖାନା ସମୃଦ୍ଧ; କିନ୍ତୁ ଦାରିଦ୍ର୍ୟରେ ନିଷ୍ପେଷିତ ହୋଇଛନ୍ତି ଓଡ଼ିଶାର ଲୋକ—ଏହାହିଁ ବିପଦ; ଏହାହିଁ ବୈଷମ୍ୟ । ସଭାରେ ସମସ୍ତ ଲୋକଙ୍କର ହୃଦୟକୁ ସତେ ଯେପରି ଏଇ କଥାଟି ଆନ୍ଦୋଳିତ କରି ଦେଉଥିଲା ! କିନ୍ତୁ ସେଦିନର ସେହି ଅର୍ଥପୂର୍ଣ୍ଣ ବକ୍ତୃତା ଭିତରେ ସମସ୍ତେ ଦେଖିପାରିଥିଲେ ଓଡ଼ିଶାର ଏକ ଉଜ୍ଜ୍ୱଳ ଭବିଷ୍ୟତର ଛବି—ଏକ ସମୃଦ୍ଧିବନ୍ତ ସୁନାର ଓଡ଼ିଶା । ସେହି ସମୟ ଯାଇଛି, ତାହା ଯାଇଛି । ଆଜି ଅବହେଳା କରିବାର ସମୟ ନାହିଁ । ବୈଜ୍ଞାନିକର ତୂଳୀରେ ବର୍ତ୍ତମାନ ଓଡ଼ିଶା ନୂତନ ରଙ୍ଗରେ ରଙ୍ଗାୟିତ ହେବାକୁ ଯାଉଛି—ନୂତନ ରୂପରେ ମଣ୍ଡିତ ହେବାକୁ ଯାଉଛି । ଓଡ଼ିଶାରେ କଳକାରଖାନା ବସାଇ ଓଡ଼ିଶାର ଖଣିଜକୁ ବ୍ୟବହାର କରିବା ପାଇଁ ସରକାର ଆଜି ବଦ୍ଧପରିକର । ରାଜ୍ୟ ସରକାରଙ୍କର ଖଣି ନିର୍ଦ୍ଦେଶାଳୟ, ଓଡ଼ିଶା ମାଇନିଂ କର୍ପୋରେସନ୍ ଏବଂ ଭାରତୀୟ ଭୂତାତ୍ତ୍ୱିକ ସମୀକ୍ଷାର ଓଡ଼ିଶା ସର୍କଲର କାର୍ଯ୍ୟାଳୟର ପ୍ରବୀଣ ଭୂତତ୍ତ୍ୱବିତ୍‌ମାନେ ଖଣିଜର ଖୋଜ କରିବାରେ ଆଗେଇ ଚାଲିଛନ୍ତି ଏକ ଅଦମ୍ୟ କର୍ମଶକ୍ତି ନେଇ । ସମଗ୍ର ଓଡ଼ିଶା ଆଜି ହୋଇଉଠିଛି କର୍ମଚଞ୍ଚଳ । ତାଳଚେର-ଠାରେ ଗଢ଼ିଉଠୁଛି ବିରାଟ ଥର୍ମାଲ୍ ଷ୍ଟେସନ—ପାରାଦୀପଠାରେ ଗଢ଼ି-ଉଠିଛି ବିରାଟ ବନ୍ଦର ।

ଦିନ ଥିଲା, ଯେତେବେଳେ ଏହି ଓଡ଼ିଶାର ପାଲବନ୍ଧା ବୋଇତ ପାଲ ମେଲି ନୀଳ ସମୁଦ୍ରର ସୀମାହୀନ ବକ୍ଷଉପରେ ଭାସିଯାଉଥିଲା ଦୂର ଦେଶକୁ ପଣ୍ୟଦ୍ରବ୍ୟ ଏବଂ କଳିଙ୍ଗର କଳା, ସଂସ୍କୃତି ଓ ସଭ୍ୟତାର ସନ୍ଦେଶ ନେଇ । ସାଧବବୋହୂ ବୋଇତ ବନ୍ଦାଇ ମନରେ ପାଉଥିଲା ଅସୀମ ଆନନ୍ଦ; କଳିଙ୍ଗର ଦୂରଦେଶ ସହିତ ବେପାର-ବଣିଜର ସମୃଦ୍ଧିରେ ଗୌରବାନ୍ୱିତ ହୋଇଉଠୁଥିଲା ତା'ର ମନ—ସେହି ଶ୍ରୀ ଚାଲିଗଲା; ଏକଦା ସମୃଦ୍ଧିବନ୍ତ କଳିଙ୍ଗ କାଳସ୍ରୋତରେ ହତଶ୍ରୀ ହୋଇପଡ଼ିଲା । ଏକଦା କର୍ମପ୍ରବଣ, କର୍ମଚଞ୍ଚଳ ଜାତି ସତେ ଯେପରି ନୀରବ, ନିସ୍ପନ୍ଦ ଓ ନିଷ୍କ୍ରିୟ ହୋଇପଡ଼ିଲା । ବହୁ ବର୍ଷ ଅତିବାହିତ ହୋଇଗଲାଣି ଏହା ଭିତରେ । ଆଜି ପୁଣି ସେହି ପ୍ରାଚୁର୍ଯ୍ୟ ଓ ସମୃଦ୍ଧିର ଏକ ନୂତନ ସ୍ୱପ୍ନ ଉଦ୍‌ଘାଟିତ ହେବାକୁ



( ପାରଦ୍ୱୀପର ବତୀଖୁଣ୍ଟ )



( ପାରଦ୍ୱୀପ ବନ୍ଦର—ଉତ୍କଳ-ସଂସ୍କୃତିର ସଂକେତ )

ଯାଉଛୁ । ଆଉ ଦିନ ବେଶୀ ଡେରି ନାହିଁ; ଯେତେବେଳେ କି ପାରାଦ୍ୱୀପ ବନ୍ଦର ମୁଣ୍ଡଟେକି ଠିଆ ହୋଇ ଓଡ଼ିଶାର ଲୁପ୍ତ ଗୌରବକୁ ପୁନରୁଜ୍ଜୀବିତ କରିବ । ଏହି ବନ୍ଦରରୁ ପୁଣି ପଣ୍ୟବାହୀ ଜାହାଜ ଭାସିଯିବ ଜାପାନ ପ୍ରଭୃତି ଦୂର ଦେଶକୁ । ଖଣିଜ ରପ୍ତାନି ବାଣିଜ୍ୟ ବିକାଶଲାଭ କରି ଓଡ଼ିଶାର ଅର୍ଥନୈତିକ ମୂଳଦୁଆକୁ ଦୃଢ଼ୀଭୂତ କରିବ । ଭବିଷ୍ୟତ ଓଡ଼ିଶାର ସମୃଦ୍ଧିର ପ୍ରତୀକ ହିଁ ଓଡ଼ିଶାର ଖଣିଜ ସମ୍ପଦ ।

ସଭା ଭାଙ୍ଗିଲା । ସରପଞ୍ଚ ଓ ଗ୍ରାମବାସୀଙ୍କଠାରୁ ବିଦାୟ ନେଇ ଅଫିସର ଚାଲିଗଲେ । ଲୋକମାନେ ନିଜ ନିଜ ଘରକୁ ବାହୁଡ଼ିଲେ; କିନ୍ତୁ ସେଦିନର ସନ୍ଧ୍ୟା ସମସ୍ତଙ୍କ ପାଖରେ ହୋଇଉଠିଥିଲା ଏକ ଅବିସ୍ମରଣୀୟ ସନ୍ଧ୍ୟା ।

